Anil Kumar Panigrahy

ସବୁଠାରୁ ଅଧିକ ଲୋକପ୍ରିୟ ପାଠ୍ୟକ୍ରମ ଯେଉଁଥିରୁ ଏ ପର୍ଯ୍ୟନ୍ତ ୨୦ ଲକ୍ଷରୁ ଅଧିକ ପାଠକ ଉପକୃତ ହେଲେଣି

ଅନାୟାସ ସହଜସାଧ୍ୟ

## ଇଂରାଜୀ କଥାବାର୍ତ୍ତା ଶିଖିବା ଲାଗି ସହଜ ଓ ସରଳ ପ୍ରଣାଳୀ

# ରେପିଡେକ୍ସ ଇଂଲିଶ ସ୍ପିକିଂ କୋର୍ସ®




ଏବେ ଓଡ଼ିଆ ଭାଷାରେ ମିଳୁଛି

ବଡ଼ ସାଇଜର 384 ପୃଷ୍ଠା

ପ୍ଲାଷ୍ଟିକ ଲାମିନେଟେଡ୍ ବହୁ ରଙ୍ଗୀ ମଲାଟ

ମୂଲ୍ୟ 24/- ଟଙ୍କା
ଡାକ ଖର୍ଚ୍ଚ 4/- ଟଙ୍କା

## ରେପିଡେକ୍ସ ପାଠ୍ୟକ୍ରମର ବିଶେଷତ୍ୱ—

- ଏଥିରେ ନିର୍ଭୁଲ ଉଚ୍ଚାରଣ ପାଇଁ ପୂରା ପାଠ୍ୟକ୍ରମରେ ଇଂରାଜୀ ବାକ୍ୟ ଓ ଶବ୍ଦ ଗୁଡ଼ିକୁ ଓଡ଼ିଆ ଅକ୍ଷରରେ ଦିଆଯାଇଛି ।
- ପ୍ରାୟ ୨୪୦୦ ବଛା ବଛା ଇଂରାଜୀ ଶବ୍ଦ ଓ ପ୍ରାୟ ୧୭୦୦ ସାଧାରଣ କଥାବାର୍ତ୍ତା (କଥୋପକଥନ) ଲାଗି ଉପଯୋଗୀ ଛୋଟ ଛୋଟ ବାକ୍ୟ ଦିଆଯାଇଛି; ଯାହା କି :
  - ଘରେ ବା ଦପ୍ତରରେ, କଲେଜ ବା ସ୍କୁଲରେ, ଭୋଜି ବା ସଭା ସମିତିରେ...
  - ପ୍ରେମିକ-ପ୍ରେମିକା, ପତି-ପତ୍ନୀ, ଅଫିସର-କର୍ମଚାରୀ, ବ୍ୟବସାୟୀ-ଗରାଖ, ଛୋଟ-ବଡ଼ ସବୁ ଶ୍ରେଣୀର ଲୋକେ...
  - ପ୍ରେମାଳାପ, ଶିଷ୍ଟାଚାର, ଅଭିବାଦନ, ସମ୍ବର୍ଦ୍ଧନା, ନିମନ୍ତ୍ରଣ, ପ୍ରଶଂସା ଅଥବା ସାନ୍ତ୍ୱନା...
  - ମନୋରଞ୍ଜନ, ସ୍ୱାସ୍ଥ୍ୟ, ଖାଦ୍ୟପେୟ, ବେଶଭୂଷା ତଥା ସାମାଜିକ ଓ ରାଜନୈତିକ ପ୍ରସଙ୍ଗରେ...
  - ଟେଲିଫୋନରେ, ସଭାସମିତିରେ ବା କୌଣସି ବିଶେଷ ଅବକାଶରେ ଅଥବା କୌଣସି ଏକ ବିଷୟରେ ବିଦ୍ୱତ୍ତାର ସହିତ...
  - କୌଣସି ଶ୍ରେଣୀର ପୁରୁଷ ବା ମହିଳାମାନଙ୍କ ସାଙ୍ଗରେ ସଫଳତାର ସହିତ କଥାବାର୍ତ୍ତା ସମୟରେ କୁହାଯାଇ ଥାଏ ।
- ପଢୁ ପଢୁ ଶିଖିବା ଓ ବୁଝିବା ଲାଗି ଏକ ସହଜ, ସୁଗମ ଓ ନୂତନ ପ୍ରଣାଳୀ...ଯେପରି ଛୋଟ ପିଲାଟିଏ ଲେଖି ପଢ଼ି ନ ଜାଣି ବି ଶୁଣିଶୁଣି କଥା କହିବା ଭଳି ଶିଖିଯାଏ ।
- ପୂରା ପାଠ୍ୟକ୍ରମରେ କଥାବାର୍ତ୍ତାର ଢଙ୍ଗ ଯେପରି ମୁହାଁମୁହିଁ କଥୋପକଥନ ଭଳି ।

**ମୂଲ୍ୟ ଫେରସ୍ତ ଦିଆଯିବ**

ଆପଣ ରେପିଡେକ୍ସ କୋର୍ସ ପଢ଼ି ସନ୍ତୁଷ୍ଟ ନ ହେଲେ ପରେ ବହିଟି ଫେରନ୍ତା ଡାକରେ ପଠାଇ ଦେଲେ, ଡାକଖର୍ଚ୍ଚ କଟାଯାଇ ଅବଶିଷ୍ଟ ପୁରା ଦାମ ଫେରସ୍ତ ଦିଆଯିବ ।

## ଏପରି ଯୁବକ ଯୁବତୀ....

## ପୁରୁଷ ସ୍ତ୍ରୀ ଲୋକଙ୍କ ପାଇଁ ଏହା ଉଦ୍ଦିଷ୍ଟ ଯେଉଁମାନେ କି—

- ଗ୍ରାଜୁଏଟ୍ ହୋଇ ମଧ୍ୟ ଇଂରାଜୀ କହିବାକୁ ସାହସ ପାଆନ୍ତି ନାହିଁ ।
- ଇଣ୍ଟରଭିଉରେ ବିଫଳ ହୁଅନ୍ତି ଓ ଭଲ ଚାକିରୀ ପାଆନ୍ତି ନାହିଁ ।
- କଲେଜ ଛାତ୍ର ସଂସଦ ବା କ୍ଲବରେ ଆଧୁନିକ ରୁଚିସମ୍ପନ୍ନ ପିଲାଙ୍କ ସହିତ ମିଳାମିଶା କରି ପାରନ୍ତି ନାହିଁ ।
- ଶିକ୍ଷିତା ଗୃହିଣୀ ହୋଇ ବି ପଡ଼ୋଶୀ, କୁଣିଆ ଓ ଅନ୍ୟ ଆଧୁନିକ ପରିବାରର ଲୋକଙ୍କ ସହିତ ରଙ୍ଗ ଢଙ୍ଗରେ କଥାବାର୍ତ୍ତା କରି ମିଳିମିଶି ଚଳି ପାରନ୍ତି ନାହିଁ ଅଥବା ଇଂରାଜୀ ମାଧ୍ୟମ ବିଦ୍ୟାଳୟରେ ପଢୁଥିବା ନିଜର ପିଲାମାନଙ୍କୁ ପାଠପଢ଼ାରେ ସାହାଯ୍ୟ କରି ପାରନ୍ତି ନାହିଁ କି ସେମାନଙ୍କୁ ଯୋଗ୍ୟ କରି ପାରନ୍ତି ନାହିଁ ।
- ବ୍ୟବସାୟୀ ବା ଦୋକାନୀ ହୋଇ କୌଣସି ଅଫିସରଙ୍କ ସାଥିରେ ନିର୍ଭୟରେ କଥାଭାଷା କରି ପାରନ୍ତି ନାହିଁ; ଶିକ୍ଷିତ କର୍ମଚାରୀ ନିଯୁକ୍ତ କରି ସେମାନଙ୍କଠାରୁ ଯଥାରୀତି କାମ ହାସଲ କରି ପାରନ୍ତି ନାହିଁ । ମୋଟାମୋଟି କହିବାକୁ ଗଲେ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସେମାନେ ପଛେଇ ଯାଆନ୍ତି ।

ରେପିଡେକ୍ସ କୋର୍ସ ପ୍ରତ୍ୟେକ ପୁସ୍ତକ ବିକ୍ରେତା, ରେଳ ଷ୍ଟେସନ, ବସ ଷ୍ଟାଣ୍ଡ ଓ ବିମାନ ଘାଟିରେ ପ୍ରତିଷ୍ଠିତ ବୁକ୍ ଷ୍ଟଲରେ ମଧ୍ୟ କିଣିବାକୁ ମିଳୁଛି । ପୁସ୍ତକ ଭି.ପି.ପି. ଦ୍ୱାରା ମଗାଇବା ଠିକଣା—



**PUSTAK MAHAL** (CM) KHARI BAOLI, DELHI-110006

VANDANA/PM/ Or-

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗି ରେଡ୍‌ଡୀ

---

ଅନେକ ସମୟରେ ଆମ ପାଠକମାନେ ପୁରୁଣା 'ଚନ୍ଦାମାମା'ରେ ପ୍ରକାଶିତ କାହାଣୀମାଳ ପଢ଼ିବାକୁ ମନ ବଳାଇଥାନ୍ତି । ସେଥିପାଇଁ ଏ ସଂଖ୍ୟାରେ ବହୁ ବର୍ଷ ତଳର କେତୋଟି ଗଳ୍ପ ପୁନଃ ପ୍ରକାଶ କରାଗଲା । ଏ ସଂଖ୍ୟାରେ "ବେତାଳ କଥା" ମଧ୍ୟ ମୂଳ ବେତାଳ ପଞ୍ଚବିଂଶତି ଉପରେ ଆଧାରିତ ।

## ଅମରବାଣୀ

ନକ୍ର ସ୍ୱସ୍ଥାନ ମାସାଦ୍ୟ ଗଜେନ୍ଦ୍ରମପି କର୍ଷତି ।
ସ ଏବ ପ୍ରଚ୍ୟୁତଃ ସ୍ଥାନାତ୍ ଶ୍ୱାନାପି ପରଭୂୟତେ ।।

[ସ୍ୱସ୍ଥାନରେ ଥାଇ କୁମ୍ଭୀର ହାତୀ ଭଳି ପ୍ରାଣୀକୁ ବି ଓଟାରି ନେଇପାରେ । କିନ୍ତୁ ନିଜ ସ୍ଥାନରୁ ବିଚ୍ୟୁତ ହୋଇ ସ୍ଥଳକୁ ଆସିଗଲେ କୁକୁରଟିଏ ମଧ୍ୟ ତାକୁ କାବୁ କରିଦେଇ ପାରେ ।]

---

ବର୍ଷ : ୧୭ ସେପ୍‌ଟେମ୍ବର ୧୯୮୩ ଅଙ୍କ : ୩

ପ୍ରତିସଂଖ୍ୟା : ଟ.୨-୦୦ :: ବାର୍ଷିକ ମୂଲ୍ୟ : ଟ.୨୪-୦୦



## ଜହ୍ନମାମୁଁ ସମ୍ବାଦ

### ଅଗାଧ ସମୁଦ୍ର ଗର୍ଭରୁ



୧୬୨୨ ଖ୍ରୀଷ୍ଟାବ୍ଦରେ ଆମେରିକାର ଫ୍ଲୋରିଡା ଉପକୂଳରେ ଗୋଟିଏ ପ୍ରବଳ ଝଡ଼ ଉଠିଥିଲା । ଫଳରେ ଦୁଇଟି ପୋତ ଜଳମଗ୍ନ ହୋଇଥିଲେ ଏବଂ ୩୮୦ ଜଣ ନାବିକ ପ୍ରାଣ ଦେଇଥିଲେ । ସମ୍ପ୍ରତି ଗୋଟିଏ ବିଶେଷ ଜାହାଜ ସାହାଯ୍ୟରେ ସେଦିନ ଜଳମଗ୍ନ ହୋଇଥିବା ପ୍ରାୟ ଛଅ ଶହ କୋଟି ଡଲାର ମୂଲ୍ୟର ସୁନାର ଏକ ଦଶମାଂଶ ଉଦ୍ଧାର କରା ହୋଇଛି ।

### ମରୁଭୂମିରେ ତିମିମାଛ !

ଭୂଗର୍ଭରୁ ତୈଳ ସନ୍ଧାନ କରୁଥିବା ଦଳେ ବିଶେଷଜ୍ଞ ଫରାସୀ ସାହାରା ଭିତରେ ଗୋଟିଏ ତିମିମାଛର ସନ୍ଧାନ ପାଇଛନ୍ତି । କୁମ୍ଭୀରର ଭଗ୍ନାଂଶ ମଧ୍ୟ ବାଲୁକାରାଶି ଭିତରୁ ମିଳିଛି । ଏଥିରୁ ଜଣାଯାଏ ବହୁ ଅତୀତରେ ସାହାରା ମରୁଭୂମି ସମୁଦ୍ରର ଅଂଶ ବିଶେଷ ଥିଲା ।



## ଜାଣନ୍ତି କି ?

୧. ଗୋଆର ପ୍ରାଚୀନ ନାମ କ'ଣ ?

୨. ଆଗ୍ରା ନଗରୀର ନାମକରଣ କିପରି ହେଲା ?

୩. ଦାର୍ଜିଲିଂ ନଗରୀର ନାମକରଣ କିପରି ହେଲା ?

୪. କାଶୀର ନାମ କାଶୀ ସଙ୍ଗେ ସଙ୍ଗେ ବାରଣସୀ କାହିଁକି ?

୫. ଏସିଆର ବୃହତ୍ତମ ଗୋଲାପ ବଗିଚା କେଉଁଠି ?

୬. ପୃଥିବୀରେ ସର୍ବୋଚ୍ଚ ରେଳ ଷ୍ଟେସନ କେଉଁଠି ?

୭. ପୃଥିବୀର ସବୁଠାରୁ ବଡ଼ ଶଙ୍ଖ-ମଲମଲ ପ୍ରସ୍ତର ନିର୍ମିତ ମସ୍‌ଜିଦ୍ କେଉଁଠି ?

(ଉତ୍ତର ପୃଷ୍ଠା ୬୪ ରୁ ପାଇବେ)



# ସଚ୍ଚା ସମ୍ପଦ

ପ୍ରାଚୀନ କାଳର କଥା । ଅମରାବତୀ ରାଜ୍ୟରେ ସେତେବେଳେ ରାଜୁତି କରୁଥିଲେ ରାଜା ବିଜୟସେନ ।

ରାଜାଙ୍କ ଅଧୀନରେ ବହୁ ରାଜକର୍ମଚାରୀ ଥିଲେ । ସେମାନେ ପ୍ରଜାଙ୍କ ସୁଖଦୁଃଖ ବୁଝିବା କଥା । ପ୍ରୟୋଜନ ହେଲେ ପ୍ରଜାଙ୍କ ସମସ୍ୟା ରାଜାଙ୍କ ଦୃଷ୍ଟିକୁ ଆଣିବା କଥା । କିନ୍ତୁ ରାଜା ସେମାନଙ୍କୁ ବିଶେଷ ବିଶ୍ୱାସ କରୁ ନଥିଲେ । ସେଥିପାଇଁ ଛଦ୍ମବେଶ ପକାଇ ସେ ନିଜେ ମଧ୍ୟେ ମଧ୍ୟେ ରାଜ୍ୟର ବିଭିନ୍ନ ଅଞ୍ଚଳରେ ଯାଇ ବୁଲୁଥିଲେ । ରାଜ୍ୟର ହାଲ୍‌ଚାଲ ନିଜେ ଦେଖୁଥିଲେ ।

ଦିନେ ଛଦ୍ମବେଶୀ ରାଜା ବଣ ରାସ୍ତା ଦେଇ ଯାଉଛନ୍ତି, ଅଦୂରରୁ ମଧୁର ବଂଶୀଧ୍ୱନି ଶୁଭିଲା, ରାଜା ସେ ସ୍ୱର ଅନୁସରଣ କରି କିଛି ବାଟ ଯାଇ ଦେଖିଲେ ଜଣେ ଗାଉଁଲି ଟୋକା ବଂଶୀ ବଜାଉଛି । ସେ ରାଜାଙ୍କୁ ଦେଖି ହସିଦେଲା । ରାଜାଙ୍କର ଧାରଣା ହେଲା, ସେ ତରୁଣଟି ବଡ଼ ସତ୍ ଓ ସରଳ । ତା' ଦେହରେ ବି ଏକପ୍ରକାର ମାଧୁର୍ଯ୍ୟ ଓ ଲାବଣ୍ୟ ଥିଲା—ଯାହା ରାଜାଙ୍କୁ ମୁଗ୍ଧ କଲା ।

ତରୁଣଟିର ନାମ ସଦାଶିବ । ରାଜା ତା' ସହ କଥାବାର୍ତ୍ତା କରି ବହୁତ ଖୁସି ହେଲେ । ତାକୁ କହିଲେ, "ତମେ ମୋ ସହ ଯଦି ସହରକୁ ଯିବ, ତେବେ ତମକୁ ଭଲ ଚାକିରି କରାଇଦେବି । ଭଲ ଘରେ ରହିବ । ଭଲ ଖାଇବାକୁ ପିଇବାକୁ ମିଳିବ ।"

ତରୁଣଟି ଥିଲା ଗରିବ ଓ ବାପମା' ଛେଉଣ୍ଡ । ଦୁନିଆରେ ତା'ର ନିଜର ବୋଲି କେହି ନାହିଁ କହିଲେ ଚଳେ । ତେଣୁ ରାଜାଙ୍କର ଏ ଅପ୍ରତ୍ୟାଶିତ ପ୍ରସ୍ତାବରେ ସେ ସଙ୍ଗେ ସଙ୍ଗେ ରାଜି ହୋଇଗଲା । ତା'ର ସେଇ ଏକମାତ୍ର ସମ୍ବଳ



ବଂଶୀ ଓ ଖଣ୍ଡେ କମ୍ବଳ ନେଇ ସେ ଛଦ୍ମବେଶୀ ରାଜାଙ୍କ ସହିତ ଚାଲିଲା ।

ସହରରେ ପହଞ୍ଚିବା ଉତ୍ତାରୁ ସେ ବୁଝିଲା, ଯିଏ ତାଙ୍କୁ ନେଇ ଆସିଲେ ସେ ସ୍ୱୟଂ ରାଜା । ସେ ଆଶ୍ଚର୍ଯ୍ୟ ଓ ଆନନ୍ଦିତ ହେଲା । ରାଜା ସଦାଶିବ ପାଇଁ ରାଜନବର ସଂଲଗ୍ନ ଅତିଥି ଭବନରେ ସ୍ଥାନ ଦେଲେ । ସେ ଯେପରି ପାଠଶାଠ ପଢ଼ିବ, ସେ ବ୍ୟବସ୍ଥା କରିଦେବା ସଙ୍ଗେ ସଙ୍ଗେ ତା' ଖିଆପିଆ ଓ ପୋଷାକ ପରିଚ୍ଛଦ ପାଇଁ ଉପଯୁକ୍ତ ବ୍ୟବସ୍ଥା ମଧ୍ୟ କରିଦେଲେ ।

ସଦାଶିବ ମନଦେଇ ପାଠ ପଢ଼ିଲା । ଦୁଇ ବର୍ଷ ପରେ ରାଜା ତାଙ୍କୁ କହିଲେ, "ଯେତିକି ଲେଖାପଢ଼ା ଶିଖିଲଣି, ସେତିକି ଯଥେଷ୍ଟ । ବର୍ତ୍ତମାନ କାମ କର । ପ୍ରସ୍ତୁତ ?"

"ହଁ ମଣିମା । ଆପଣ ଯେଉଁ କାମ ଦେବେ, ସେ କାମ କରିବ । କାମରେ ଯୋଗଦେବା ପୂର୍ବରୁ ମୋତେ ଥରେ ମୋ ଗାଁରୁ ବୁଲି ଆସିବା ନିମନ୍ତେ ଅନୁମତି ଦିଅନ୍ତୁ ।" ସଦାଶିବ କହିଲା ।

ରାଜା ଆନନ୍ଦରେ ଅନୁମତି ଦେଲେ ।

ସଦାଶିବ ଗାଁକୁ ଯିବା ମାତ୍ରେ ଗାଁ ଲୋକେ ତାଙ୍କୁ ବହୁତ ଆଦର ଅଭ୍ୟର୍ଥନା କଲେ । କେଡ଼େ ଭାଗ୍ୟବାନ ହେଲେ ଜଣେ ରାଜାଙ୍କ ପ୍ରତ୍ୟକ୍ଷ ସ୍ନେହଦୃଷ୍ଟିରେ ପଡ଼ିପାରେ ! ସମସ୍ତେ ଏଇକଥା କହିଲେ ।

ସଦାଶିବ ନମ୍ର ଭାବରେ ସମସ୍ତଙ୍କୁ କହିଲା, "ଆପଣମାନେ ମୋତେ ଭାଗ୍ୟବାନ ବୋଲି କହୁଛନ୍ତି । ଧନ୍ୟବାଦ । କିନ୍ତୁ ମୋ ଦୃଷ୍ଟିରେ ଆପଣମାନେ ଭାଗ୍ୟବାନ !"

ଲୋକେ ତା' କଥାକୁ ଛୁଚ୍ଛା ବିନମ୍ର ବୋଲି ମନେ କଲେ ।

ସଦାଶିବ ଯଥା ସମୟରେ ସହରକୁ ଲେଉଟି ଆସିଲା । ରାଜା ତାଙ୍କୁ କହିଲେ, "ତୁ ରାଜକୋଷର ତତ୍ତ୍ୱାବଧାୟକ ରୂପେ କାର୍ଯ୍ୟ କର ।"

ସେ ପଦଟି ସାଧାରଣତଃ ରାଜାଙ୍କର ସବୁଠାରୁ ବଡ଼ ବିଶ୍ୱସ୍ତ କର୍ମଚାରୀଙ୍କୁ ମିଳୁଥାଏ । ରାଜକୋଷରେ ପୁରୁଷ ପୁରୁଷର କେତେ ଧନ ସମ୍ପଦ ରତ୍ନରାଶି ସାଇତା ହୋଇ ରହିଥାଏ ।

ଜଣେ ସାଧାରଣ ଲୋକ ସେସବୁରୁ କିଛି ଆତ୍ମସାତ୍ କରିବାର ଲୋଭ ସମ୍ବରଣ ନ କରିପାରେ ।

ସେଥିପାଇଁ ବହୁତ ଦିନର ଅଭିଜ୍ଞତା ଥିବା, ବୟସ୍କ ଓ ଜଣାଶୁଣା ଲୋକ ହାତରେ ରାଜକୋଷର ଭାର ଦିଆଯାଏ । କିନ୍ତୁ ଏଇ ଅଜ୍ଞାତକୁଳଶୀଳ, ଅର୍ବାଚୀନ ତରୁଣଟି ହାତରେ ହଠାତ୍ ରାଜକୋଷର ଭାର ସମର୍ପଣ କରିବା ପଛରେ ରାଜାଙ୍କର କି ଉଦ୍ଦେଶ୍ୟ ଅଛି କେହି ବୁଝିପାରିଲେ ନାହିଁ ।



ସଦାଶିବଙ୍କୁ ସେ ପଦଟି ମିଳିବାରୁ ଦରବାରର ଅନେକ ଅମାତ୍ୟ ତାଙ୍କୁ ଈର୍ଷା କଲେ । କିନ୍ତୁ କେହି କିଛି କରି ପାରିଲେ ନାହିଁ ।

ରାଜା ବିଜୟସେନଙ୍କର ମୃତ୍ୟୁ ହେଲା । ତାଙ୍କ ପୁଅ କନକସେନ ସିଂହାସନରେ ବସିଲେ । ସଙ୍ଗେ ସଙ୍ଗେ ସଦାଶିବ ବିରୁଦ୍ଧରେ ଅଭିଯୋଗ ହେବାକୁ ଲାଗିଲା । ସେ ରାଜକୋଷରୁ ସମ୍ପତ୍ତି ଆତ୍ମସାତ୍ କରୁଛି ବୋଲି ଅମାତ୍ୟମାନେ ରାଜାଙ୍କୁ ଗୋପନରେ ଜଣାଇଲେ ।

"ପ୍ରମାଣ ?" ନୂଆ ରାଜା ପଚାରିଲେ ।

"ମହିମା ! ଗୋଟିଏ ଛୁଟିକା ଥିଲା, ତା' ଦେହରେ ରତ୍ନ ଲାଗିଥିଲା । ବର୍ତ୍ତମାନ ସେଥିରେ ରତ୍ନ ନାହିଁ ବୋଲି ଆମେ ଜାଣୁ ।" ଅମାତ୍ୟମାନେ କହିଲେ ।

ରାଜା ଦେଖିଲେ ବାସ୍ତବିକ ସେଥିରେ ରତ୍ନ ନାହିଁ । କିନ୍ତୁ ଅନୁସନ୍ଧାନରୁ ଜଣାଗଲା, ରାଜା ବିଜୟସେନ ସେ ରତ୍ନକୁ ଖୋଲିନେଇ ତାଙ୍କ ନିଜ ତରବାରିରେ ଲଗାଇଥିଲେ ।

ଏହାପରେ ଅମାତ୍ୟମାନେ କହିଲେ, "ଆପଣ ରାଜକୋଷରେ ଥିବା ସବୁ ବସ୍ତୁର ଗୋଟାଏ ତାଲିକା ପ୍ରସ୍ତୁତ କରିବାକୁ ସଦାଶିବଙ୍କୁ କହନ୍ତୁ । ପୁରୁଣା ତାଲିକା ସହ ତାକୁ ମିଳାଇ ନିଜେ ରାଜକୋଷ ଭିତରକୁ ଯାଇ ଦେଖନ୍ତୁ—ସବୁ ଜିନିଷ ଠିକ୍ ଅଛି କି ନାହିଁ ।"

ରାଜା ତାହାହିଁ କଲେ । ଦୁଇ ତାଲିକା ଏକାପ୍ରକାର ଥିଲା । ରାଜକୋଷ ଭିତରକୁ ରାଜା ସପରିବାରେ ଯାଇ ଦେଖିଲେ ଯେଉଁ ଜିନିଷ ଯେଉଁଠି ରହିବା କଥା ସେଇଠି ଅଛି ।

ହଠାତ୍ ଜଣେ ଅମାତ୍ୟ ଗୋଟାଏ କାନ୍ଥ ଆଲ୍‌ମିରା ଆଡ଼କୁ ରାଜାଙ୍କ ଦୃଷ୍ଟି ଆକର୍ଷଣ କରି ତାଙ୍କ କାନରେ କିଛି କହିଲେ, "ଏହାର କବାଟ ଆପଣ ଖୋଲିବାକୁ କହନ୍ତୁ ।"

ରାଜା ଦେଖିଲେ ବାସ୍ତବିକ୍ ସଦାଶିବ ସବୁ ଆଲ୍‌ମିରା ଉତ୍ସାହ ସହକାରେ ରାଜାଙ୍କୁ ଖୋଲି ଦେଖାଉଥିଲେ ମଧ୍ୟ ଗୋଟିଏ କାନ୍ଥ ଆଲ୍‌ମିରା ବିଷୟରେ ସେ କିଛି ଉତ୍ସାହ ଦେଖାଇ ନାହାନ୍ତି । ରାଜାଙ୍କ ମନରେ ଅଳ୍ପ ସନ୍ଦେହର ଉଦ୍ରେକ ହେଲା ।

"ସଦାଶିବ! ଏଥିରେ କ'ଣ ଅଛି?" ରାଜା ପଚାରିଲେ ।

"ମହିମା, ମୋ ନିଜର ଅମୂଲ୍ୟ ସମ୍ପଦ । ତା' ସହ ରାଜକୋଷର କୌଣସି ସମ୍ପର୍କ ନାହିଁ ।" ସଦାଶିବ କହିଲା ।

ଅମାତ୍ୟମାନଙ୍କ ମୁହଁ ଉଜ୍ଜ୍ୱଳ ଦିଶିଲା । ରାଜାଙ୍କ ମୁହଁରେ ମଧ୍ୟ ସନ୍ଦେହ ପରିସ୍ଫୁଟ ହେଲା । ରାଜା କହିଲେ, "ମୋର ଆଦେଶ, ଏହାକୁ ଖୋଲ ।"

ସଦାଶିବ ଗୃହ ଖୋଲି ଦେଲେ । ଭିତରେ ଥିଲା ପୁରୁଣା ବଂଶୀଟିଏ, ଖଣ୍ଡିଏ ଛିଣ୍ଡା କମ୍ବଳ ଓ ହଳେ ପୁରୁଣା ଜୋତା ।

"ଇଏ କ'ଣ? ତମର ଅମୂଲ୍ୟ ସମ୍ପଦ କାହିଁ?" ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ମହିମା! ଏହାହିଁ ମୋର ଅମୂଲ୍ୟ ସମ୍ପଦ । ମଣିଷ କାମ କରେ ଶାନ୍ତି ପାଇଁ । ମୋତେ ଆପଣ ବହୁତ ଦରମା ଦେଉଛନ୍ତି, କିନ୍ତୁ ଏ ଈର୍ଷା-କାତର ପରିସ୍ଥିତିରେ ମୁଁ ଶାନ୍ତି ପାଉ ନାହିଁ । ଯେତେବେଳେ ମୋର ସମ୍ପଦ ବୋଇଲେ ଏଇଆ ଥିଲା, ସେତେବେଳେ ମୋ ମନରେ ଶାନ୍ତି ଥିଲା ।" ସଦାଶିବ କହିଲେ ।

ରାଜା ଲଜ୍ଜା ଅନୁଭବ କଲେ । ଅମାତ୍ୟମାନଙ୍କ ମୁହଁ କଳା ପଡ଼ିଗଲା ।

ପରଦିନ ରାଜା ସଦାଶିବଙ୍କୁ ମନ୍ତ୍ରୀ ପଦକୁ ଉନ୍ନୀତ କଲେ ।






[ ୩ ]

[ପିଙ୍ଗଳର ସହାୟତାରେ ପଦ୍ମପାଦ ସରୋବରରୁ ଦୁଇଟି କୁମ୍ଭୀରବଚ୍ଛା ହସ୍ତଗତ କରି କୂଳକୁ ଆସିଲା । ସେ ପିଙ୍ଗଳକୁ ତା' ସହିତ ଭଲ୍ଲୁକ ପର୍ବତକୁ ଯିବା ନିମନ୍ତେ ଅନୁରୋଧ ଜଣାଇଲା । ପିତାଙ୍କ ବୃଦ୍ଧ ଗୁରୁଠାରୁ ମହାମାୟୁ ନାମକ ତାନ୍ତ୍ରିକର ଯେଉଁ କାହାଣୀ ସେ ଶୁଣିଥିଲା, ପିଙ୍ଗଳକୁ ସେ ସେହି କାହାଣୀ ଶୁଣାଇବାକୁ ଲାଗିଲା ।]

ଗୁରୁ କହିଥିଲେ : "ଭଲ୍ଲୁକ ପର୍ବତର ଘାଟି ସେ ଦେଖି ପାରିବ । ଦ୍ୱିତୀୟ ହେଲା ଗୋଟିଏ
ଭିତର ଦେଇ ଯେଉଁ ନଦୀ ପ୍ରବାହିତ, ଅଦ୍ଭୁତ ଛୁରିକା । ସେଥିରୁ ବଜ୍ର ଭଳି ଶକ୍ତି
ସେ ନଦୀ ଭିତରେ ରହିଛି ଗୋଟିଏ ମନ୍ଦିର । ନିର୍ଗତ ହୁଏ—ଯାହା ଫଳରେ କି ପ୍ରବଳ
ସେ ମନ୍ଦିର ପ୍ରାଙ୍ଗଣରେ ମହାତାନ୍ତ୍ରିକ ଶତ୍ରୁ ମଧ୍ୟ ନିହତ ହେବ । ତୃତୀୟ ବସ୍ତୁ
ମହାମାୟୁଙ୍କର ସମାଧି ରହିଛି । ସେଠାରେ ହେଲା ସ୍ୱର୍ଣ୍ଣନିର୍ମିତ ଗୋଲକଟିଏ । ତାକୁ
ଛନୋଟି ଅମୂଲ୍ୟ ବସ୍ତୁ ଅଛି । ଗୋଟାଏ ହେଲା ଅଧିକାର କରିବା ବ୍ୟକ୍ତି ତାକୁ ବୁଲାଇ
ମୁଦି । ତାକୁ ଯିଏ ପିନ୍ଧିବ, ଭୂଗର୍ଭର ସମ୍ପତ୍ତି ଯେଉଁ ଦେଶର ରାଜା ହେବାକୁ ସେ ମନ




କରିବ, ଅତଃପରେ ସେ ଦେଶର ରାଜା ହୋଇ ପାରିବ ।

"କିନ୍ତୁ ମହାମାୟୁଙ୍କର ସେ ତନ୍ତ୍ରଚଜ ହସ୍ତଗତ କରିବାକୁ ହେଲେ ପ୍ରଥମେ ଶୁକ ସରୋବରରେ କୁମ୍ଭୀର ରୂପେ ସ୍ଥିତ ତାଙ୍କ ଶିଷ୍ୟକୁ ନିଜ ଅଧୀନକୁ ଆଣିବାକୁ ପଡ଼ିବ । ସେପାଇଁ ପିଙ୍ଗଳ ନାମକ ଜଣେ ଧୀବରର ସହାୟତା ଲୋଡ଼ା । ଯିଏ ଏ ତନ୍ତ୍ର ବସ୍ତୁ ହାସଲ୍ କରିପାରିବ, ସେ ତମମାନଙ୍କ ପିତା ରଖିଯାଇଥିବା ତନ୍ତ୍ର ଗ୍ରନ୍ଥ ଦ୍ୱାରା ଲାଭବାନ୍ ହୋଇ ପାରିବ ।"

ଗୁରୁ ଯାହା କହିଥିଲେ ପଦ୍ମପାଦ ସେକଥା କହିସାରି କହିଲା : ଆମ ପିତୃ-ଗୁରୁ ଆମକୁ ଏହା ଜଣାଇ ଆମ ତିନିଙ୍କ ଆଡ଼େ ଦୃଷ୍ଟିପାତ କଲେ । ଶୁକ ସରୋବରରେ କୁମ୍ଭୀର ରୂପେ ରହିଥିବା ମହାମାୟୁଙ୍କ ଶିଷ୍ୟକୁ କିପରି ଅଧୀନ କରିବାକୁ ହେବ, ଏହା ଭାବି ନପାରି ମୁଁ କିଂକର୍ତ୍ତବ୍ୟବିମୂଢ଼ ହେଲି ।

ମୋର ଅନ୍ୟ ଦୁଇଭାଇ ମଧ୍ୟ ବିସ୍ମିତ ହୋଇ ବସି ରହିଲେ । ପିତୃ-ଗୁରୁ ପୁଣି କହିଲେ, "ମହାମାୟୁଙ୍କ ଶିଷ୍ୟଙ୍କୁ ଅଧୀନକୁ ଆଣିବା ଦିଗରେ ଧୀବର ପିଙ୍ଗଳ ତମକୁ ସାହାଯ୍ୟ କରିପାରେ । କିନ୍ତୁ ସେତେବେଳେ ତମର ଜୀବନ ବିପନ୍ନ ହୋଇପାରେ । ତେଣୁ ପ୍ରଥମରୁ ସାବଧାନ କରିଦେଲି ।"

ଆମ ତିନିଭାଇଙ୍କ ଭିତରୁ ପ୍ରଥମେ ମଣ୍ଡନ କହିଲା, "ଆଜ୍ଞା, ଏ ଦିଗରେ ଜୀବନ ବିପନ୍ନ କରି ଉଦ୍ୟମ କରିବାକୁ ମୁଁ ପ୍ରସ୍ତୁତ ରହିଛି । ବାପା କେତେ ପ୍ରଗାଢ଼ ଅଧ୍ୟବସାୟ ସହକାରେ ତନ୍ତ୍ର ସାଧନା କରୁଥିଲେ । ସେ ଅନେକ ସମୟ ଓ ଶକ୍ତି ସେ ଦିଗରେ ବ୍ୟୟ କରିଛନ୍ତି । ସେ ରଖିଯାଇଥିବା ତନ୍ତ୍ର ଗ୍ରନ୍ଥର ରହସ୍ୟ ଉଦ୍‌ଘାଟନ କରିବା ଅତ୍ୟନ୍ତ ଜରୁରୀ । ଭୂଗର୍ଭରେ ପ୍ରୋଥିତ ସମ୍ପଦ ମୁଁ ଯେମିତି ହେଲେ ହସ୍ତଗତ କରିବି ।"

ବଡ଼ ଭାଇର ଏକଥା ଶୁଣି ଆମ ଦୁହିଙ୍କର ଉତ୍ସାହ ମଧ୍ୟ ବଢ଼ିଗଲା । ଆମେ ବି ସେ ଦିଗରେ ପ୍ରାଣପାତ କରି ଉଦ୍ୟମ କରିବାକୁ ପ୍ରସ୍ତୁତ ବୋଲି କହିଲୁଁ । ତୁମ ଦ୍ୱାରା ହାତ



ଗୋଡ଼ ବନ୍ଧା ହୋଇ କପଟ ଭାବରେ ସଙ୍ଗେବର ଭିତରକୁ ନିକ୍ଷିପ୍ତ ହେବା ଦରକାର, ପିଙ୍ଗୁଳକୁ ଡେଣିକ ସେସବୁ ବୁଝାଇ କହିଲେ ।

ପିଙ୍ଗଳ ମୁଣ୍ଡ ହଲାଇ କହିଲା, "ନା ବାବୁ ! ମୋର ଯେତିକ ସାହାଯ୍ୟ କରିବା କଥା ତାହା ମୁଁ କରିଛି । ମୋତେ ଯେତିକ ପଇସା ମିଳିବା କଥା ମିଳିଯାଉ । ମୁଁ ଭଲ୍ଲୁକ ପର୍ବତକୁ ଯିବାକୁ ପ୍ରସ୍ତୁତ ନୁହେଁ । ଭଲ୍ଲୁକ ପର୍ବତରୁ ଯାଇ ଫେରିବା ବେଳକୁ ମୋ ମା' ମୋ ବାପ ଗୁହାଁ ଗୁହାଁ ସେତେବେଳରେ ମରିଯିବ ।"

ପଦ୍ମପାଦ କିଛି ସମୟ ନୀରବ ରହିଲା । ତା'ପରେ ପିଙ୍ଗଳର ପିଠି ଆଉଁସାଇ ଦେଇ କହିଲା, "ପିଙ୍ଗଳ ! ଦେଖୁଛି ତମେ ବଡ଼ ଡରୁଆ । ବିଶ୍ବାସ ରଖ, ମୋତେ ସାହାଯ୍ୟ କଲେ ତୁମର ବହୁତ ଶୁଭ ହେବ । ମହାମାତ୍ୟ ଯେଉଁ ଗୁମ୍ଫା ମନ୍ଦିର ଭିତରେ ସମାଧିସ୍ଥ ସେ ମନ୍ଦିର ଭିତରକୁ ତମକୁହିଁ ଯିବାକୁ ହେବ ।"

"ମୋର କୌଣସି ଅନିଷ୍ଟ ହେବ ନାହିଁ, ଆପଣ ଏକଥା ଦୃଢ଼ ଭାବରେ କହିପାରିବେ ?" ପିଙ୍ଗଳ ପଚାରିଲା ।

ପଦ୍ମପାଦ କହିଲା, "ମୁଁ ସେକଥା ଶପଥ କରି କହିପାରେଁ ।"

ପିଙ୍ଗଳ ଟିକିଏ ଚିନ୍ତା କରି କହିଲା, "କେତେ ଦିନକେ ଭଲ୍ଲୁକ ପର୍ବତରୁ ଫେରି ଆସିହେବ ?"

"ଦୁଇମାସ ଲାଗିବ । ତମେ ସେଠାରୁ ଫେରିବା ବେଳକୁ ଆଉ ସାମାନ୍ୟ ଧୀବରଟିଏ ହୋଇ ରହି ନଥିବ । ତମକୁ ଦୁନିଆ ଭିତରେ ସବୁଠାରୁ ବଡ଼ ଧନୀ ବନାଇଦେବି—ଏ ଜବାବ୍ ଦେଉଛି ।" ପଦ୍ମପାଦ କହିଲା ।

ପିଙ୍ଗଳ ହସିଲା ଓ କହିଲା, "ଭାଇ, କେବେ ଦୁନିଆରେ ସବୁଠାରୁ ବଡ଼ ଧନୀ ହେବି—ସେ କଥା କଳ୍ପନା କରି ଖୁସି ହେବାର ଅବସ୍ଥା ମୋର କାହିଁ ? ତମେ ଜାଣନା, ମୋର ସମ୍ପତ୍ତି ବୋଲି କିଛି ନାହିଁ । ମୁଁ ଏକା ନୁହେଁ । ମୋ ମା ଓ ଦୁଇ ଭାଇ ମୋ ରୋଜଗାର ଉପରେ ନିର୍ଭର କରନ୍ତି । ଦୁଇମାସ କାଳ ମୁଁ ବାହାରେ ରହିଲେ ସେମାନେ ଚଳିବେ

କମର ? ଯଦି ଯଥେଷ୍ଟ ପଇସାପତ୍ର ସେମାନଙ୍କ ଜିମାରେ ଦେଇଯାଇ ପାରନ୍ତି, ତେବେ ହୁଏତ ସେମାନେ କୌଣସି ମତେ ଚଳିଯା'ନ୍ତେ । କିନ୍ତୁ ସେଭଳି ବ୍ୟବସ୍ଥା କରିବା ମୋ ପକ୍ଷରେ ସମ୍ଭବପର ନୁହେଁ । ନା, ଭାଇ, ମୁଁ ତମର ଦୁଃସାହସିକ ଅଭିଯାନରେ ଭାଗନେଇ ପାରିବି ନାହିଁ । କ୍ଷମା କର ।"

ପିଙ୍ଗଳ ଘୋଡ଼ା ଦେହରେ ଲଟକା ହୋଇଥିବା ଥଳିଟି ଖୋଲି ହଜାରେ ମୋହର ବାହାର କଲା ଓ ପିଙ୍ଗଳ ହାତରେ ଦେଇ କହିଲା, "ତମ ମା ଜିମା ଏ ଟଙ୍କା ଦେଇଥିବ । ବାସ୍ । ଆଉ ଚିନ୍ତା କ'ଣ ? ଆଗାମୀ କାଲି ଏତିକବେଳେ ଏଇଠି ଆମର ଭେଟ ହେଉ । ବୁଝିଲ ?"

ପଦ୍ମପାଦଠୁଁ ଟଙ୍କା ଧରି ପିଙ୍ଗଳ ଏଥର ଆନନ୍ଦରେ ଘରେ ଯାଇ ପହଞ୍ଚିଲା । ସେତେବେଳେ ତା' ଭାଇମାନେ ଘରେ ନଥିଲେ । ମା ତାଙ୍କୁ ଅପେକ୍ଷା କରି ବସିଥିଲେ । ପିଙ୍ଗଳ ଖୁସି ହୋଇ ମା ଆଗରେ ମୋହରତକ ଢାଳି ଦେବା ମାତ୍ରେ ସେ ଆତଙ୍କରେ ଶିହରି ଉଠିଲେ । "ପିଙ୍ଗଳ ! ଏତେ ଧନ ତୁ କେଉଁଠାରୁ ପାଇଲୁ ? ମୋତେ ବହୁତ ଡର ଲାଗୁଛି ।" ସେ କହିଲେ ।

ପିଙ୍ଗଳ ସବୁ କଥା କହିଗଲା । ତା'ପରେ ମାଙ୍କୁ ସାନ୍ତ୍ୱନା ଦେଇ କହିଲା, "ମାତ୍ର ଦୁଇଟି ମାସର କଥା । ଗୁହୁଁ ଗୁହୁଁ ଦିନ ଗୁଳିଯିବ ଓ ମୁଁ ପୁଣି ଆସି ତମ ଆଗରେ ଠିଆ ହେବି । ଚିନ୍ତା କ'ଣ ?"



ମା ଦେଖିଲେ ପିଙ୍ଗଳକୁ ଯେତେ ବୁଝାଇଲେ ବି ସେ ମାନିବ ନାହିଁ । ସେ କହିଲେ, "ତାନ୍ତ୍ରିକମାନଙ୍କ କାରବାର ଉପରେ ମୋର ମୋଟେ ବିଶ୍ୱାସ ନାହିଁ । ତୁ କହୁଛୁ ପଦ୍ମପାଦ ବହୁତ ଭଲ ଲୋକ । ତାହା ସତ ହୋଇଥାଉ । ମୁଁ ସବୁ ଦେବତାଙ୍କୁ ସ୍ତୁତି କରୁଛି; ତୁ କୁଶଳରେ ଫେରିଆ ।"

ପରଦିନ ନିର୍ଦ୍ଦିଷ୍ଟ ସମୟରେ ପିଙ୍ଗଳ ଯାଇ ଶୁକ୍ଳ ସରୋବର ପାଖରେ ପହଞ୍ଚିଲା । ସରୋବର କଡ଼ରେ ପଦ୍ମପାଦ ଏକାକୀ ଠିଆ ହୋଇଥିଲା । ତା' କାଖରେ ଥଳିଟିଏ ଥିଲା । ଘୋଡ଼ା ବା ଅନ୍ୟ କୌଣସି ବାହନ ନଥିଲା ।

ପିଙ୍ଗଳ ତା ପାଖକୁ ଯାଇ ପଚାରିଲା, "ପଦ୍ମପାଦ ! ତୁମେ ଘୋଡ଼ା ଆଣି ନାହିଁ କାହିଁକି ? ଏଠାରୁ କ'ଣ, ଚାଲି ଚାଲି ଯିବାକୁ ପଡ଼ିବ ?"

ପଦ୍ମପାଦ ହସି ଉଠିଲା । "ଚାଲି ଚାଲି ଗଲେ କେବେ ପହଞ୍ଚିବା ? ଭଲ୍ଲୁକ ପର୍ବତ ଏଠାରୁ ଦୁଇ ତିନିଶହ ମାଇଲ ଦୂରରେ । ଆଉ ଦୁଇଦିନ ପରେ ଗୋଟାଏ ପର୍ବଦିନ । ଆମକୁ ସେ ପର୍ବଦିନ ସୁଦ୍ଧା ସେଠାରେ ପହଞ୍ଚିବାକୁ ପଡ଼ିବ । ବାହନ ଦରକାର ତ ? ହେଇ, ଦେଖ ଆମ ବାହନ କେମିତିକା !" ଏହା କହି ପଦ୍ମପାଦ ଟିକିଏ ମାଟି ଉଠାଇ ନେଇ କ'ଣ ମନ୍ତ୍ର ପଢ଼ି ସେଥିରେ ଫୁଙ୍କି ଦେଲା ଓ ତାହା ତଳକୁ ଛାଟି ଦେଲା ।

ଭୀଷଣ ଶବ୍ଦ କରି ମାଟି ଦ୍ୱିଧା ବିଭକ୍ତ ହୋଇଗଲା । ଅତି କର୍କଶ ରଡ଼ି କରି ବାହାରି





ଆସିଲେ ଯୋଡ଼ାଏ ଗଧ । ପଦ୍ମପାଦ ଗୋଟାଏ ଗଧ ଉପରେ ନିଜ ଥଳି ରଖିଦେଇ ନିଜେ ତା'ଉପରେ ସବାର୍ ହେଲା । ପିଙ୍ଗଳ କ'ଣ କରିବ ଠିକ୍ କରି ନପାରି ଚାହିଁଥାଏ ।

ପଦ୍ମପାଦ କହିଲା, "ପିଙ୍ଗଳ, ଦେଖୁଛ କ'ଣ ? ସେ ଗଧଟି ତମ ବାହନ । ଡେରି କର ନାହିଁ । ଆମକୁ ଯଥା ଶୀଘ୍ର ଯାଇ ପହଞ୍ଚିବାକୁ ପଡ଼ିବ । ବହୁତ ବାଟ ଯିବାର ଅଛି !"

ପିଙ୍ଗଳ କହିଲା, "ଭାଇ, ଏଏ ଗଧ ଭଳି ଲାଗୁନାହିଁ, ବରଂ ପିଶାଚ ଭଳି ଲାଗୁଛି । ଏହା ଉପରେ ବସିବ କିପରି ?"

"ଏହା ସାଧାରଣ ଗଧ ନୁହେଁ ନିଶ୍ଚୟ । ପିଶାଚ କି ଅନ୍ୟ କିଛି, ସେକଥା ତମେ ଭାବିବା ଦରକାର ନାହିଁ । ଏଏ ଆମକୁ କ୍ଷିପ୍ର ଗତିରେ ନେଇ ଆମ ଗନ୍ତବ୍ୟ ସ୍ଥାନରେ ପହଞ୍ଚାଇ ଦେବ । ଡରିବାର କାରଣ ନାହିଁ । ମୁଁ ତମ ପାଖେ ପାଖେ ଅଛି । ବସିଯାଅ !" ପଦ୍ମପାଦ କହିଲା ।

ପିଙ୍ଗଳ ଆଉ ଦ୍ୱିଧା ନକରି ଗଧ ଉପରେ ସବାର ହେଲା । ସଙ୍ଗେ ସଙ୍ଗେ ବିକଟ ରଡ଼ି କରି ଦୁଇ ଗଧ ଛୁଟିବାକୁ ଲାଗିଲେ । କେତେବେଳେ ସେମାନେ ଶୂନ୍ୟରେ ଉଡ଼ି ଚାଲିଥାନ୍ତି ତ କେତେବେଳେ ପୃଥିବୀ ଉପରେ ଧୂଆଁ ଭଳି ବାଲି ଉଡ଼ାଇ ଛୁଟି ଚାଲିଥାନ୍ତି ।

ସନ୍ଧ୍ୟା ବେଳକୁ ଦୁହେଁ ଗୋଟାଏ ବଣ ପାଖରେ ପହଞ୍ଚିଲେ । ପଦ୍ମପାଦ ଗଧରୁ ଓହ୍ଲାଇ ପଡ଼ି କହିଲା, "ପିଙ୍ଗଳ, ଆଜି ରାତିକ ଆମକୁ ଏଇଠାରେ କଟାଇବାକୁ ପଡ଼ିବ । ସକାଳେ ପୁଣି ଯାତ୍ରାରମ୍ଭ । ସନ୍ଧ୍ୟା ସୁଦ୍ଧା ପୁଣି ଭଲ୍ଲୁକ ପର୍ବତରେ ପହଞ୍ଚିବାକୁ ପଡ଼ିବ ।"

ପିଙ୍ଗଳ ସେତେବେଳକୁ ଅତ୍ୟନ୍ତ କ୍ଳାନ୍ତ ହୋଇଥାଏ । ତେଣୁ ସେ ଖୁସି ହେଲା ।

କିଛି ସମୟ ପରେ ଗାଧୋଇବା ନିମନ୍ତେ ପିଙ୍ଗଳର ଇଚ୍ଛା ହେଲା । ସେ ପଦ୍ମପାଦକୁ ସେକଥା କହିବାରୁ ପଦ୍ମପାଦ ଗୋଟାଏ ଦିଗକୁ ନିର୍ଦ୍ଦେଶ କରି କହିଲା, "ସେଇଠି ସ୍ୱଚ୍ଛ ସରୋବର ଅଛି । ଏ ଅଞ୍ଚଳରେ ଭୟର କୌଣସି କାରଣ ନାହିଁ ।"

ପିଙ୍ଗଳ ସରୋବରର ଉଦ୍ଦେଶ୍ୟରେ ଗ୍ଭଲିଲା । ବାଟରେ ସେ ଭାବୁଥାଏ, ପଦ୍ମପାଦ କେଉଁ ପ୍ରକାର ବିପଦର ଭୟ ନାହିଁ ବୋଲି କହିଲା ? ଜନ୍ତୁ ଜାନୁଆର୍‌ ନା ଭୂତ ପ୍ରେତ ?

ଅଳ୍ପ ସମୟ ଭିତରେ ସରୋବରର ଦୃଷ୍ଟି-ଗୋଚର ହେଲା । ତା'ର ସ୍ୱଚ୍ଛ ଜଳ ଦେଖି ପିଙ୍ଗଳ ଆନନ୍ଦରେ ସେଥିରେ ପଶିବାକୁ ଯାଉଛି । କାତର କଣ୍ଠରେ କେହି କହିବାର ଶୁଣିଲା : "ମୋତେ ବନ୍ଧନ ମୁକ୍ତ କର । ମୁଁ ତୁମର ଉପକାର କରିବି ।..."



ପିଙ୍ଗଳ ଚମକି ପଡ଼ିଲା । ସେ ଏଣେ ତେଣେ ଅନାଇ ଦେଖିଲା । ସରୋବରର ଗୋଟିଏ ତୀରରେ ଖଣ୍ଡିଏ ଶିଳା ଦେହରେ ଗୋଟିଏ ବିକୃତ ଚେହେରାବାଲା କେହି ଜଣେ ବନ୍ଧା ହୋଇ ରହିଛି । ପ୍ରଥମେ ପିଙ୍ଗଳ ଦୌଡ଼ି ପଳାଇବାକୁ ମନ କଲା । କିନ୍ତୁ ତା'ପରେ ସେ ଭାବିଲା, "ଏ ଜୀବ ତ ବନ୍ଧା ହୋଇଛି । ଭୟ କ'ଣ ?" ସେ ପଳାଇ ନଯାଇ ଠିଆ ହୋଇ ଲକ୍ଷ୍ୟ କଲା ।

"ପ୍ରଭୁ ! ମୋ ହାତରେ ବନ୍ଧା ହୋଇଥିବା ଏ ଜଂଜିର ଖୋଲି ଦେଇ ମୋତେ ରକ୍ଷା କରନ୍ତୁ । ବଦଳରେ ଆପଣ ଯେପରି ସାହାଯ୍ୟ କରିବାକୁ କହିବେ କରିବି ।" ଏହା କହି ସେ ବନ୍ଦୀ କାତର ଧ୍ୱନି କରିବାକୁ ଲାଗିଲା ।

ସେତେବେଳକୁ ପିଙ୍ଗଳ ମନରେ ହିମ୍ମତ ଆସି ଯାଇଥାଏ । ସେ ଧିରେ ଧିରେ ସେ ବନ୍ଦୀ ଆଡ଼କୁ ଅଗ୍ରସର ହେଲା । ସେ ଯେତିକି ଯେତିକି ତା'ର ନିକଟବର୍ତ୍ତୀ ହେଉଥାଏ, ସେ ବନ୍ଦୀ ସେତିକି ଅଧିକ ଭୟଙ୍କର ଦିଶୁଥାଏ । ତା' ଆଖିରୁ ସତେ ଅବା ଅଗ୍ନିକଣା ବାହାରୁଥାଏ । ତା' ଦେହର ରଙ୍ଗ ବଣୁଆ ମଇଁଷି ଭଳି । ହାତୀ କାନ ଭଳି ପ୍ରକାଣ୍ଡ ଦୁଇଟି କାନ ।

ପିଙ୍ଗଳ ଥରି ଥରି ଠିଆ ହୋଇ ରହିଲା ।

"ପ୍ରଭୁ ! ମୋତେ ରକ୍ଷା କର । ମୁଁ ଆପଣଙ୍କର ଅନେକ ଉପକାର କରି ପାରିବି । ତିନିଲୋକରେ ଯୁଆଡ଼େ ଯିବାକୁ ଗ୍ଭହିଁବେ, ସେଆଡ଼େ ନେଇଯିବି ।" ସେ ଭୀଷଣାକାର ବନ୍ଦୀ କହିଲା ।

ପିଙ୍ଗଳ ଏଥର ପୁଣି ଦମ୍ଭ ଫେରି ପାଇଲା ଓ କହିଲା, "ଚନ୍ଦ୍ରଲୋକ କାହିଁକି, ଆମକୁ ଚଉଦ ଭୁବନ ନେଇଗଲା ଭଳି ଶଧ ଆମ ପାଖରେ ରହିଛି । ତେବେ ତୁ ସେ ଶଧଙ୍କଠୁଁ ମଜବୁତ ଦେଖା ଯାଉଛୁ । ତୋ ନାମ କ'ଣ ?"

"ମୋ ନାମ ଭଲ୍ଲୁକକେତୁ ।" ସେ ବନ୍ଦୀ ଓଜସ୍ୱୀ କଣ୍ଠରେ ଉତ୍ତର ଦେଲା ।

"ଆଚ୍ଛା, ଭଲ୍ଲୁକପର୍ବତ ବିଷୟରେ ତୋତେ କିଛି ମାଲୁମ୍ ଅଛି ?" ପିଙ୍ଗଳ ପଚାରିଲା ।

"ଭଲ୍ଲୁକ ପର୍ବତ ? ହାୟ !" ଏହା କହି ଭଲ୍ଲୁକକେତୁ ଅର୍ଥପୂର୍ଣ୍ଣ ଭାବରେ ହସିଲା ଓ ତା'ପରେ କହିଲା, "କିଛି କାଳ ମୁଁ ସେ ପର୍ବତର ଅଧିପତି ଥିଲି । କିନ୍ତୁ ଜଣେ ତାନ୍ତ୍ରିକ ଯୋଗୁଁ ମୋର ଆଜି ଏ ଦୁର୍ଦ୍ଦଶା । ତମେ ମୋତେ ମୁକ୍ତ କର । ଭଲ୍ଲୁକ ପର୍ବତର ସବୁ ସମ୍ପତ୍ତି ମୁଁ ତମକୁ ସମର୍ପି ଦେବି ।"

ଭଲ୍ଲୁକକେତୁ ମୁହଁରୁ ଏହା ଶୁଣି ପିଙ୍ଗଳ ମନରେ ତୀବ୍ର ଲୋଭ ହେଲା । ଭଲ୍ଲୁକକେତୁ ସାହାଯ୍ୟରେ ସେ ନିଜେ ଭଲ୍ଲୁକ ପର୍ବତର ସମସ୍ତ ସମ୍ପଦର ଅଧିକାରୀ ହୋଇ ପାରିବ । ଇଚ୍ଛା ହେଲେ ପଦ୍ମପାଦକୁ କିଛି ଅଂଶ ଦେବ ।

ସେ କହିଲା, "ତୋତେ ମୁଁ ବନ୍ଧନ ମୁକ୍ତ କରିଦେଇ ପାରେଁ । କିନ୍ତୁ ମୁକ୍ତ ହେବା ପରେ ତୁ ମୋତେ ସାହାଯ୍ୟ କରିବୁ, ଏ ବିଷୟରେ ନିଶ୍ଚୟତା କ'ଣ ?"

"ଆଜ୍ଞା, ମୋ ଉପରେ ଗୋଟାଏ ଅଭିଶାପ ଅଛି : ଯଦି ମୁଁ କେବେ ମୋ କଥା ଭାଙ୍ଗିବି, ତେବେ ମୋ ମୁଣ୍ଡ ଫାଟିଯିବ । ତେଣୁ ଜାଣି ରଖନ୍ତୁ, ଯେଯାଏ ମୁଁ ମରିବାକୁ ପ୍ରସ୍ତୁତ ହୋଇ ନାହିଁ, ସେଯାଏ ମୁଁ କଥା ଭାଙ୍ଗି ପାରିବ ନାହିଁ ।"

ଭଲ୍ଲୁକକେତୁର ଏକଥା ଶୁଣି ପିଙ୍ଗଳ ମନରେ ବିଶ୍ୱାସ ଆସିଗଲା । ସେ ଖଣ୍ଡିଏ ପଥର ଟେକି ନେଇ ଅଗ୍ରସର ହେଲା ।

ହଠାତ୍ ପଛରୁ ଶୁଭିଲା ପଦ୍ମପାଦର କଣ୍ଠସ୍ୱର : "ପିଙ୍ଗଳ ! ରୁହ !"






# ଅଦ୍ଭୁତ ଆଚରଣ

ନିଶା ଗରଜୁଥାଏ। ଝୁହାଲୁ ଝୁହା ବର୍ଷା ହେଉଥାଏ। ଶ୍ୱାନଶ୍ୱାପଦଙ୍କ ରଡ଼ ସାଙ୍ଗକୁ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ। ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ।

କିନ୍ତୁ ତଲେ ମଧ୍ୟ ବିଚଳିତ ନ ହୋଇ ରାଜା ବିକ୍ରମାର୍କ ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଓହ୍ଲାଇ ଆଣିଲେ। ତା'ପରେ ଶବଟିକୁ କାନ୍ଧରେ ପକାଇ ଶୁନ୍‌ଶାନ୍‌ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତମ ଆଚରଣ ଦେଖି ମୋର ଖାଲି ମନେ ହେଉଛି ଯେ ମଣିଷର ଆଚରଣ ବୁଝିବା ବାସ୍ତବିକ ବଡ଼ କଷ୍ଟକର। ତୁମକୁ ଗୋଟାଏ ଉଦାହରଣ ଦେଉଛି।

## ବେତାଳ କଥା




କୌଣସି ସ୍ୱତନ୍ତ୍ର ବ୍ୟବସ୍ଥା ନକଲେ ଚଳିବ ନାହିଁ । ସାଧାରଣ ନଗର-ରକ୍ଷୀମାନେ ଏ ଦିଗରେ କିଛି କରିପାରିବେ ବୋଲି ଆମର ବିଶ୍ୱାସ ହେଉନାହିଁ ।

ରାଜା ସେମାନଙ୍କୁ ଭରସା ଦେଇ କହିଲେ କି ଅଳ୍ପ ଦିନ ଭିତରେ ଦସ୍ୟୁ ଯେପରି ଧରା ପଡ଼ିଯିବ, ସେ ଦିଗରେ ସେ ଯଥା ବିହିତ ବ୍ୟବସ୍ଥା କରିବେ । ସଜ୍ଜନମାନେ ଚାଲିଯିବା ଉତ୍ତାରୁ ରାଜା ବଡ଼ ଚିନ୍ତାରେ ପଡ଼ିଲେ । ନଗର-ରକ୍ଷୀମାନେ ସେ ଦସ୍ୟୁକୁ ଧରିବାକୁ ଚେଷ୍ଟାରେ ତ୍ରୁଟି କରିନାହାନ୍ତି, ଏହିକଥା ସେ ଜାଣିଥିଲେ । ଦସ୍ୟୁ ବଡ଼ କୌଶଳୀ ବୋଲି ଧରା ପଡୁନାହିଁ ।

ସେହିଦିନ ରାତିରେ ରାଜା ଜଣେ ସାଧାରଣ ଲୋକର ବେଶ ଧାରଣ କରି ବାହାରି ପଡ଼ିଲେ । ଦେଖିଲେ ମନେ ହେବ ସେ ସତେ ଅବା ଜଣେ ଚୋର । ପ୍ରକୃତରେ ରାଜାଙ୍କୁ ଖୁବ୍ ଭଲ ଅଭିନୟ କରି ଆସୁଥିଲା ।

ସେ ହଠାତ୍ ଜଣେ ଯୁବକକୁ ଦେଖିଲେ । ତାକୁ ଦେଖି ତାଙ୍କ ମନରେ ସନ୍ଦେହ ହେଲା । କିନ୍ତୁ ସେ ଯୁବକଟିର ପାଖକୁ ଯାଇ ଏମିତି ଅଭିନୟ କଲେ, ସତେ ଅବା ସେ ଡରିଯାଇ ପଳାଉଛନ୍ତି । ଯୁବକ ତାଙ୍କୁ ଧରି ପକାଇଲା ଓ ପଚାରିଲା, "ତୁ ଚୋର ନିଶ୍ଚୟ !" ରାଜା କାନ୍ଦ କାନ୍ଦ ହୋଇ କହିଲେ, "ଆଜ୍ଞା, ଆପଣ ଯେତେବେଳେ ସତକଥା ଜାଣି ପକାଇଛନ୍ତି,

ମନ ଦେଇ ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ ଗପିଲା : ପ୍ରାଚୀନ କାଳର କଥା । ଅଯୋଧ୍ୟାରେ ରାଜୁତି କରୁଥିଲେ ରାଜା ବୀରବାହୁ । ହଠାତ୍ ତାଙ୍କ ନଗରୀରେ ଗୋଟିଏ ଦସ୍ୟୁ ଉପଦ୍ରବ କରିବାକୁ ଆରମ୍ଭ କଲା । ଦିନେ ନଗରୀର କେତେଜଣ ବିଶିଷ୍ଟ ସଜ୍ଜନ ଆସି ରାଜାଙ୍କୁ ଭେଟି କହିଲେ, "ମହାରାଜ, ଆଉ କେତେଦିନ ଆମେ ଏ ଦସ୍ୟୁର ଉପଦ୍ରବ ସହୁଥିବୁଁ ? ଆପଣଙ୍କ ନଗର-ରକ୍ଷୀମାନେ କିଛି କରି ପାରୁ ନାହାନ୍ତି । ସବୁ ରାତିରେ ଚୋରି ହେଉଛି । ଦସ୍ୟୁ ଭୀଷଣ କୌଶଳୀ । ଆପଣ ତାକୁ ଧରିବା ଦିଗରେ

ମୋତେ କ୍ଷମା କରନ୍ତୁ ଓ ଛାଡ଼ି ଦିଅନ୍ତୁ । ଆଜି ରାତିରେ ମୋତେ କିଛି ମିଳିନାହିଁ କେବଳ ବନ୍ଧୁ ବିପଦ ଭିତରେ କୌଣସି ମତେ ରକ୍ଷା ପାଇ ଚାଲି ଆସିଛି ।"



ଯୁବକ ରାଜାଙ୍କ ଆଡ଼କୁ ଲକ୍ଷ୍ୟ କରି କହିଲା, "ହୁଁ । ତୁ ଏଇ ସାହସ ଓ ବୁଦ୍ଧି ନେଇ ଚୋରି କରିବାକୁ ବାହାରିଛୁ ? ଶୁଣ । ତୋ ଦେଇ ଏ କାମ ହେବ ନାହିଁ । ବରଂ ଗୋଟାଏ କାମ କର । ମୁଁ ତୋତେ ଭଲ ଦରମା ଦେବି । ବଣ ଭିତରେ ମୋର ଗୋଟାଏ ଘର ଅଛି । ସେଠାରେ ମୋର ଜଣେ ବୁଢ଼ୀମା ଛଡ଼ା କେହି ନାହିଁ । ତୁ ସେ ଘର ଜଗିବୁ । ରାଜି ?"

"ହଉ ଆଜ୍ଞା !" ରାଜା କହିଲେ ।

ଯୁବକ ରାଜାଙ୍କୁ ବଣ ଭିତରେ ଗୋଟାଏ ଭୂଗର୍ଭ ଘରକୁ ନେଇଗଲା । ସେ ଘର ଦେଖିବା ମାତ୍ରେ ଓ ସେଠାରେ ଥିବା ଜିନିଷପତ୍ର ଲକ୍ଷ୍ୟ କରି ରାଜା ବୁଝିଗଲେ ଯେ ସେ ଯୁବକ ହେଲା ଗୋଟାଏ ମସ୍ତବଡ଼ ଦସ୍ୟୁ ଓ ସେ ଘର ତା'ର ଚୋରା ମାଲ୍ ରହିବା ସ୍ଥାନ ।

ରାଜାଙ୍କୁ ଗୋଟାଏ କୋଠରିରେ ବସାଇ ଦେଇ ଦସ୍ୟୁ ଅନ୍ୟ କୋଠରିକୁ ଯାଇଛି, ସେତିକିବେଳେ ଜଣେ ବୁଢ଼ୀ ଆସି ତାଙ୍କୁ କହିଲା, "ପୁଅ, ତୁ ଏଠି ରହିବୁ ପରା ! ତୋର ମଙ୍ଗଳ ହେଉ । କିନ୍ତୁ ସାବଧାନ । ଏଠିକା କଥା ଯଦି କେବେ କାହାକୁ କହିବୁ, ତେବେ ପ୍ରାଣ ଯିବ ।"

ରାଜା ଅଳ୍ପ ସମୟ ଭିତରେ ସେଠୁ ବାହାରି ପଳାଇ ଆସିଲେ । ସେ ଗୋଟିଏ ଦକ୍ଷ ସିପାହୀ ଦଳ ନଗର ବାହାରେ ରଖିଥିଲେ । ସେମାନଙ୍କୁ ଧରି ସଙ୍ଗେ ସଙ୍ଗେ ଆସି ସେ ଭୂଗର୍ଭ ଘର ଘେରାଉ କଲେ । ଦସ୍ୟୁ ପ୍ରତିରୋଧ କଲା, କିନ୍ତୁ ଶେଷକୁ ଧରା ହେଲା ।

ପରଦିନ ସକାଳେ ନଗରବାସୀମାନେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ, ଦସ୍ୟୁ ହିସାବରେ ଯାହାକୁ ଧରା ହୋଇଛି, ସେ ଆଉ କେହି ନୁହେଁ, ନଗରର ଶ୍ରେଷ୍ଠ ବଣିକ ସୁବର୍ଣ୍ଣଦତ୍ତଙ୍କ ସହ କାରବାର କରୁଥିବା ବସୁଦେବ ନାମକ

ଜଣେ ଯୁବକ । ସେ ସବୁ ବ୍ୟବସାୟୀଙ୍କ ଖବର ଜାଣିଥିଲା । ତେଣୁ ସହଜରେ ଚୋରି କରି ପାରୁଥିଲା । ସେ ଧରା ହେବାରୁ ସମସ୍ତେ ଆଶ୍ୱସ୍ତ ହେଲେ ।

ରାଜା ତାକୁ ପ୍ରାଣଦଣ୍ଡ ଆଦେଶ ଦେଲେ । ବଧ ଭୂମିକୁ ନେବା ବାଟରେ ସେ ସୁବର୍ଣ୍ଣଦତ୍ତଙ୍କ ଘର ଆଗଦେଇ ଗଲା । ସେତିକିବେଳେ ଗୋଟାଏ ଅପ୍ରତ୍ୟାଶିତ ଅବସ୍ଥା ଦେଖା ଦେଲା । ସୁବର୍ଣ୍ଣଦତ୍ତଙ୍କ ଏକମାତ୍ର କନ୍ୟା ସୁନ୍ଦରୀ କନକଲତା କାନ୍ଦି କାନ୍ଦି ତା' ବାପାକୁ କହିଲା, "ବିଶ୍ୱଦେବଙ୍କୁ ମୁଁ ବିବାହ ହେବି ବୋଲି ମନେ ମନେ ସ୍ଥିର କରିଥିଲି । ମୋର ଭାଗ୍ୟ ଖରାପ ଯେ ସେ ଦସ୍ୟୁବୃତ୍ତି କରି ଆଜି ବଧଭୂମିକୁ ଧରା ହୋଇ ଯାଉଛନ୍ତି । ମୁଁ ଯେତେବେଳେ ମନ ଭିତରେ ତାଙ୍କୁହିଁ ବରଣ କରିଛି, ସେହିଁ ମୋର ଇହକାଳର ଓ ପରକାଳର ସାଥୀ । ଆଜି ସେ ମୃତ୍ୟୁ ବରଣ କରୁଛନ୍ତି, ମୁଁ ମଧ୍ୟ ଖୁସିରେ ତାଙ୍କ ସହିତ ମୃତ୍ୟୁ ବରଣ କରିବାକୁ ପ୍ରସ୍ତୁତ । ତାଙ୍କର ଅବର୍ତ୍ତମାନରେ ମୁଁ ମୁହୂର୍ତ୍ତେ ମାତ୍ର ପ୍ରାଣ ଧରି ରହିବାକୁ ଚାହେଁ ନାହିଁ ।"

କନକଲତାଙ୍କୁ ବିଭା ହେବା ପାଇଁ କେତେ ସମ୍ଭ୍ରାନ୍ତ ଯୁବକ ମନ ବଳାଇଥିଲେ । କାରଣ ଧନ, ଜନ, ସମ୍ମାନ ସହିତ ସେ ଥିଲେ ଅସାମାନ୍ୟା ସୁନ୍ଦରୀ । ସେ ସମସ୍ତଙ୍କ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ତା'ର ରହସ୍ୟ ଯେ ଏଇଆ, ସେକଥା ବୁଝି ସୁବର୍ଣ୍ଣଦତ୍ତ ଯେତିକି ମର୍ମାହତ ହେଲେ, ସେତିକି ଆଶ୍ଚର୍ଯ୍ୟ ହେଲେ ।



କିନ୍ତୁ ଝିଅର ଏକଜିଦିଆ ସ୍ୱଭାବ ସେ ଜାଣିଥିଲେ । କିଛି ତ ଚେଷ୍ଟା କରିବାକୁ ହେବ । କାରଣ ବିଶ୍ୱଦେବଙ୍କୁ ସେ ଆଗରୁ ଖୁବ୍ ସ୍ନେହ କରୁଥିଲେ । ସେ ଯାଇ ରାଜାଙ୍କୁ କହିଲେ, "ଦଶଲକ୍ଷ ସ୍ୱର୍ଣ୍ଣମୁଦ୍ରା ବଦଳରେ ବିଶ୍ୱଦେବଙ୍କୁ ଦଣ୍ଡରୁ ମୁକ୍ତ ଦିଅନ୍ତୁ ।"

"ସୁବର୍ଣ୍ଣଦତ୍ତ! ଏହା ସମ୍ଭବ ନୁହେଁ । ଯଦି ଅର୍ଥ ପାଇଁ ଏଭଳି ଦସ୍ୟୁ ମୁକ୍ତି ପାଇବ, ତେବେ ମୋତେ ରାଜ୍ୟବାସୀମାନେ ଲୋଭୀ ବୋଲି କହିବେ ।" ରାଜା ଉତ୍ତର ଦେଲେ ।

ସୁବର୍ଣ୍ଣଦତ୍ତ ଝିଅକୁ ଯାଇ ଏକଥା କହିବା ମାତ୍ରେ ଝିଅ କହିଲା, "ବେଶ୍, ମୃତ୍ୟୁ ପୂର୍ବରୁ ବିଶ୍ୱଦେବ ମୋତେ ବାହା ହେଉ । ତା'ପରେ ମୋ କର୍ତ୍ତବ୍ୟ ମୁଁ ସ୍ଥିର କରିବି ।"

ସୁବର୍ଣ୍ଣଦତ୍ତ କନକଲତାକୁ ଧରି ବଧ-ଭୂମିରେ ପହଞ୍ଚିଲେ । କିନ୍ତୁ ସେତେବେଳକୁ ବିଶ୍ୱଦେବଙ୍କୁ ଦଣ୍ଡଦିଆ ସରିଲାଣି । ସେ ଶେଷ ନିଃଶ୍ୱାସ ତ୍ୟାଗ କରୁଛି ।

ସୁବର୍ଣ୍ଣଦତ୍ତ ତା' କାନ ପାଖରେ କହିଲେ, "ବିଶ୍ୱଦେବ, ତମେ ବୋଧହୁଏ ଜାଣ, ମୋ ଝିଅ ତୁମକୁ ଭଲ ପାଏ । ବର୍ତ୍ତମାନ ତୁମେ ତାକୁ ପତ୍ନୀ ରୂପେ ଗ୍ରହଣ କର ।"

ବିଶ୍ୱଦେବ ଆଖି ଖୋଲି ଅନାଇଲା । ତା'ପରେ ସେ ସମ୍ମତି ଦେଲା । ପର ମୁହୂର୍ତ୍ତରେ ତା' ଆଖିରୁ ଧାର ଧାର ଲୁହ ବୋହିଗଲା । ପୁଣି ତା'ପରେ ସେ ହସିଲା ଓ ପ୍ରାଣ ତ୍ୟାଗ କଲା ।

ତାକୁ ଶ୍ମଶାନରେ ଚିତାରେ ରଖିବା ବେଳକୁ କନକଲତା ମଧ୍ୟ ଚିତାରେ ପ୍ରାଣ



ବିସର୍ଜନ ଦେବାକୁ ବସିଲା । ଏଭଳି ଆଶ୍ଚର୍ଯ୍ୟ ଝିଅ ଓ ତା'ର ଆଶ୍ଚର୍ଯ୍ୟଜନକ ଆଚରଣ ଦେଖି ସମସ୍ତେ ସ୍ତମ୍ଭୀଭୂତ ହୋଇଗଲେ । ହଠାତ୍ କାଳଭୈରବ ଆବିର୍ଭୂତ ହୋଇ କହିଲେ, "ଝିଅ, ତୋ ପତିଭକ୍ତି ମୋତେ ମୁଗ୍‌ଧ କରିଛି । କ'ଣ ବର ଚାହୁଁଛୁ ?"

"ମୋ ସ୍ୱାମୀଙ୍କୁ ବଞ୍ଚାଇ ଦିଅନ୍ତୁ ।" କନକଲତା କହିଲା ।

"ତୋ ସ୍ୱାମୀର ମୃତ୍ୟୁ ସମୟ ହୋଇ ନଥିଲା । ଖାଲି ଜଣକର ଗଭୀର ଶୁଭେଚ୍ଛା ମିଳିଲେ ତା' ବିପଦ କଟିଯିବା କଥା । ତୋ ଶୁଭେଚ୍ଛା ଯଥେଷ୍ଟ ।" ଏହା କହି କାଳଭୈରବ ବିଶ୍ୱଦେବଙ୍କୁ ଜୀବଦାନ ଦେଲେ ।

ରାଜା ସବୁ ଶୁଣି ସେ ଦୁହିଙ୍କର ବିଧିବଦ୍ଧ ବିବାହ ନିମନ୍ତେ ସୁବର୍ଣ୍ଣଦତ୍ତଙ୍କୁ ଅନୁମତି ଦେଲେ ଓ ବିଶ୍ୱଦେବଙ୍କୁ ଗୋଟିଏ ପ୍ରତିଷ୍ଠାନର ଅଧ୍ୟକ୍ଷ ରୂପେ ଚାକିରି ଦେଲେ ।

ବେତାଳ କାହାଣୀଟି କହିସାରି ପଚାରିଲା, "ରାଜା! ବିଶ୍ୱଦେବ କନକଲତା ତାକୁ ବିଭା ହେବାକୁ ଚାହାନ୍ତି ଶୁଣି ପ୍ରଥମେ କାହିଁକି ଅଶ୍ରୁପାତ କଲା ଓ ପରେ କାହିଁକି ହସିଲା ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଜାଣି କରି ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନ କରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ପ୍ରଥମେ ବିଶ୍ୱଦେବ କନକଲତାର ଦୁର୍ଭାଗ୍ୟ କଥା ମନେ କରି କାନ୍ଦିଲା । ତା'ପରେ ଯେତେବେଳେ ବୁଝିଲା ପୃଥିବୀର ପ୍ରେମର ପରାକାଷ୍ଠା ଏପରି ହୋଇପାରେ, ଏଭଳି ସାହସୀ ଓ ଦୃଢ଼ମନା କନ୍ୟା ଅଛନ୍ତି, ସେଥିଯୋଗୁଁ ସେ ହସିଲା ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷଡାଳରେ ଝୁଲି ପଡ଼ିଲା ।





# ସ୍ୱପ୍ନ ରହସ୍ୟ

ପ୍ରାଚୀନ କାଳର କଥା । ଇନ୍ଦ୍ରପ୍ରସ୍ଥ ନଗରୀରେ ଜଣେ ବଣିକ ରହୁଥିଲେ । ଦିନ ଥିଲା ଯେତେବେଳେ ଦାସ-ଦାସୀ ଧନ ଦୌଲତରେ ତାଙ୍କ ଘର ଉଚ୍ଛୁଳି ଉଠୁଥିଲା । କିନ୍ତୁ ସବୁଦିନ ସମାନ ଯାଏ ନାହିଁ । ସେ ଗରିବ ହୋଇଗଲେ । ଫଳରେ ତାଙ୍କର ବହୁତ ଦୁଃଖ ହେଲା । ଯେଉଁମାନେ ତାଙ୍କୁ ଦେଖିଲେ ସମ୍ମାନ ଦେଖାଇ ବାଟ ଛାଡ଼ି ଯାଉଥିଲେ, ସେମାନେ ତାଙ୍କୁ ଦେଖି ନ ଦେଖିଲା ପରି ଭାବ ଦେଖାଇଲେ ।

ଦିନେ ରାତିରେ ସେ ବହୁତ କାତର ଭାବରେ ଭଗବାନଙ୍କୁ ପ୍ରାର୍ଥନା କଲେ । ଶୋଇ ପଡ଼ିବା ପରେ ସ୍ୱପ୍ନ ଦେଖିଲେ, ଜଣେ ଦେବତା ତାଙ୍କ ଆଗରେ ଆବିର୍ଭୂତ ହୋଇ କହୁଛନ୍ତି, "ତୁ ପାଟଳିପୁତ୍ର ଅଭିମୁଖେ ଯାତ୍ରା କର । ତୋ ଭାଗ୍ୟ ଖୋଲି ଯିବ ।"

ସକାଳେ ଉଠି ବଣିକ ପାଟଳିପୁତ୍ର ଅଭିମୁଖେ ଯାତ୍ରାରମ୍ଭ କଲେ । ବାଟରେ ରାତି ହୋଇଗଲା । ସେ ଗୋଟାଏ ମନ୍ଦିର ପ୍ରାଙ୍ଗଣରେ ଶୋଇ ପଡ଼ିଲେ ।

ସେ ମନ୍ଦିରର ବେଢ଼ା ଭିତରେ ଥିଲା ଠାକୁରଙ୍କର ଗନ୍ତାଘର । ଧନୀ ଭକ୍ତମାନେ ଠାକୁରଙ୍କୁ ଦେଇଥିବା ମୂଲ୍ୟବାନ୍ ଭେଟି ସବୁ ସେଇ ଘରେ ସାଇତା ହୋଇଥାଏ । ତା'ଛଡ଼ା ଠାକୁରଙ୍କର ମୂଲ୍ୟବାନ୍ ଅଳଙ୍କାର ସବୁ ମଧ୍ୟ ସେଇ ଘରେ ରକ୍ଷା ହୋଇଥାଏ । ସେ ଅଞ୍ଚଳରେ ଆଗରୁ ଚୋର ଉପଦ୍ରବ ଦେଖା ଦେଇଥାଏ । ଚୋରମାନେ ବହୁ ଆଗରୁ ମନ୍ଦିରର ସନ୍ଧାନ ନେଇଥିଲେ । ସେଇଦିନ ରାତିରେ ସୁଯୋଗ ପାଇ ଗନ୍ତାଘର ଲୁଟି କରିବା ପାଇଁ ମନ୍ଦିର ବେଢ଼ାରେ ପଶିଲେ । ସେଥିପାଇଁ ସେମାନଙ୍କୁ ମନ୍ଦିର ପ୍ରାଚୀର ଡେଇଁ ଭିତରକୁ

ଆସିବାକୁ ହେଲା । କିନ୍ତୁ ଏତେ ଗୁଡ଼ିଏ ଲୋକଙ୍କର ପାଦଶବ୍ଦ ଓ ଡେଇଁବା ଶବ୍ଦରେ ମନ୍ଦିର ଜଗୁଆଳି ଉଠିପଡି ଚିତ୍କାର କରି ଗ୍ରାମବାସୀଙ୍କୁ ଡ଼ାକି ପକାଇଲା । ସେ ବାଟରେ ଦଳେ ସିପାହୀ ଯାଉଥିଲେ । ସେମାନେ ମନ୍ଦିର ଘେରାଉ କଲେ ଓ ଚୋରମାନଙ୍କୁ କାବୁ କରିନେଲେ । ଚୋରମାନଙ୍କ ସହିତ ବିଚରା ବଣିକ ମଧ୍ୟ ଧରା ହେଲେ ଓ ଚୋରମାନଙ୍କୁ ମାଡ଼ ହେବାରୁ ସେ ମଧ୍ୟ କିଛି ମାଡ଼ ପାଇଲେ ।

ହାକିମ ଆଗରେ ବଣିକ କହିଲେ, "ହଜୁର, ମୁଁ ବା ମୋ ବାପା ଜେଜେ କେହି କେବେ ଚୋର ନଥିଲେ । ମୁଁ ଇନ୍ଦ୍ରପ୍ରସ୍ଥର ବଣିକ । ଘଟଣା କ୍ରମେ ଦୁଆଳିଆ ହୋଇଛି । ବିଧିର ବିଧାନ ଦେଖନ୍ତୁ । ମୋତେ ଗରିବ କରିବା ବୋଧହୁଏ ଯଥେଷ୍ଟ ହେଲା ନାହିଁ, ସେଥିପାଇଁ ସ୍ୱପ୍ନରେ କୌଣସି ଦେବତା ପାଟଳିପୁତ୍ର ଗଲେ ମୋ ଭାଗ୍ୟ ଖୋଲି ଯିବ ବୋଲି ଜଣାଇ, ମୋତେ ଏଭଳି ହିନସ୍ତାରେ ପକାଇଲେ । କପାଳରେ ଯାହା ଅଛି ।"

ହାକିମ ହୋ ହୋ ହସିଲେ ଓ କହିଲେ, "ବାବୁ, ମୁଁ କେତେଥର ସ୍ୱପ୍ନ ଦେଖିଛି— ଇନ୍ଦ୍ରପ୍ରସ୍ଥ ନଗରର ଉତ୍ତର କୋଣରେ ଗୋଟାଏ ଭଙ୍ଗା ମନ୍ଦିର ପଛପଟେ ବଟ ଗଛ ତଳେ ଖୋଳିଲେ ପ୍ରଚୁର ଟଙ୍କା ମିଳିବ । ମୁଁ କେବେ ବି ସ୍ୱପ୍ନ ଅନୁସାରେ କାମ କରିବାକୁ ମନ ବଳାଇ ନାହିଁ କାରଣ ମୁଁ ଭାବେ ସ୍ୱପ୍ନ ତ ସ୍ୱପ୍ନ ଆଉ କ'ଣ ସତ ହେବ? ଆଉ ତମେ ଥରେ ମାତ୍ର ସେମିତି ସ୍ୱପ୍ନ ଦେଖି ଘରୁ ବାହାରି ପଡ଼ିଲ?"

ହାକିମ ବଣିକଙ୍କୁ ଛାଡ଼ି ଦେଲେ । ବଣିକ ଇନ୍ଦ୍ରପ୍ରସ୍ଥ ଫେରି ଗଲେ । ନଗରର ଉତ୍ତର କୋଣରେ ଥିବା ଭଙ୍ଗା ମନ୍ଦିର ପଛପଟେ ଯଥାସ୍ଥାନରେ ଖୋଳି ସେ ପ୍ରଚୁର ପୋତାଧନ ପାଇଲେ । ତାଙ୍କ ଭାଗ୍ୟ ଖୋଲିଗଲା ।





# କୁକୁଡ଼ାର ମୂଲ୍ୟ

ଗୋଟିଏ ଗାଁରେ ସୁଦାମ ନାମରେ ଥାଏ କୁମ୍ଭାରଟିଏ, ମାଟିପାତ୍ର ସବୁ ଗଢ଼ି ବିକ୍ରି କରି ସେଇ ପଇସାରେ ସେ ସୁଖେ-ଦୁଃଖେ ଚଳୁଥାଏ । ରଜପର୍ବ ଆଗରୁ ଦିନେ ତା' ସ୍ତ୍ରୀ କହିଲା, "ପର୍ବ ଆସୁଛି, ତମେ କୁକୁଡ଼ାଟିଏ କିଣି ଆଣିଲେ ପିଲାପିଲିଙ୍କ ପାଇଁ ମାଂସ ରନ୍ଧା ହେବ । ଗାଁର ସବୁଠାରୁ ବଡ଼ କୁକୁଡ଼ା ବ୍ୟବସାୟୀ ହେଲା ଗୋକୁଳ ପାତ୍ର ।

ପର୍ବର ଦିନକ ଆଗରୁ ଗୋକୁଳ ଘରେ ଯାଇ ପହଞ୍ଚିଲା ସୁଦାମ ଓ କୁକୁଡ଼ାଟିଏ ପରଦିନ ଦରକାର ବୋଲି କହିଲା । ଗୋକୁଳ ତତ୍‌କ୍ଷଣାତ୍ ଆଗଭର ହୋଇ କହିଲା, "କାଲି କାହିଁକି ? ଆଜି ନେଇଯାଅ । କ'ଣ ହାତରେ ପଇସା ଆଣିନାହିଁ ବୋଲି କହୁଛ ? ମୋ ଘର ତ ତମ ଘର ପରି । ପରେ ଦେବ ।"

ପର୍ବ ତ ସରିଲା । କିଛିଦିନ ପରେ ଦିନେ ସେଇବାଟେ ଯାଉ ଯାଉ ସୁଦାମର କୁକୁଡ଼ାର ଟଙ୍କା କଥା ମନେ ପଡ଼ିଲା । ସେ ଗୋକୁଳର ଘର ଭିତରକୁ ପଶିଯାଇ କହିଲା, "କୁହ କୁକୁଡ଼ାର ଦାମ କେତେ । ମୁଁ ଆଜି ପଇସା ଦେଇ ଚାଲିଯିବି, ନଚେତ୍ ଅଳସୁଆମିରେ ବରାବର ଭୁଲି ଯାଉଥିବି ।"

"ଆରେ ସୁଦାମ, ଇଏ ତ ଆମ ଘର କଥା, ଟଙ୍କା କିଆଡ଼େ ଚାଲିଯାଉଛି ନା ତମେ ବା ମୁଁ କିଆଡ଼େ ଚାଲିଯାଉଛେ । ପରେ ଦେଖିବା ଆଜି ଯାଅ ।" ଗୋକୁଳ କହିଲା ।

ଏମିତି ଦୁଇଚାରିଥର ସୁଦାମକୁ ଗୋକୁଳ ଫେରାଇଲା । ଦିନେ ସୁଦାମ ପହଞ୍ଚି ଖୁବ୍ ଜିଦ୍ ଧରି କହିବାରୁ ଗୋକୁଳ ଖାତା ଆଣି ଗଣାଗଣି କରି କହିଲା, "କୁକୁଡ଼ାଟିର ଦାମ ହେଲା ଅଢ଼େଇଶ ଟଙ୍କା ।"

କୁକୁଡ଼ାର ଦାମ ଶୁଣି ସୁଦାମର ମଥା ଘୁରାଇଦେଲା ସେ କୌଣସି ମତେ ନିଜକୁ ସମ୍ଭାଳିନେଇ କହିଲା, "କ'ଣ କହିଲ? ଅଢ଼େଇଶ ଟଙ୍କା? ଭାଇ ମୋ କାନ ଉଠିଲା ଦିନୁ କୁକୁଡ଼ାଟିଏର ଦାମ୍ ଯେ ଅଢ଼େଇଶ ଟଙ୍କା ଏକଥା ଶୁଣି ନଥିଲି। କ'ଣ ସେଇଟା ଥିଲା ସୁନାର କୁକୁଡ଼ା?"

"ଦେଖ, ମୋ ହିସାବରେ କିଛି ଗୋଳମାଳ ନାହିଁ। ତମେ ଯେବେଠାରୁ କୁକୁଡ଼ାଟି ନେଇଛ ସେଇ ସମୟ ମଧ୍ୟରେ ସେ କେତେ ଅଣ୍ଡା ଦେଇଥା'ନ୍ତା ଓ ସେଥିରୁ ସବୁ ବାହାରିଥିବା ଛୁଆମାନେ ବଡ଼ହୋଇ ପୁଣି କେତେ ଅଣ୍ଡା ଦିଅନ୍ତେ ସବୁ ମିଶାଇ ମୁଁ ହିସାବ କରିଛି। ବୁଝିପାରିଲ ଏବେ?" ଗୋକୁଳ କହିଲା।

"ଠିକ୍ ଅଛି। ଏକଥା ମୁଁ ଗ୍ରାମର ମୁଖିଆଙ୍କୁ କହିବି। ତା' ପୂର୍ବରୁ କାଣିକଉଡ଼ିଟିଏ ସୁଦ୍ଧା ଦେବିନାହିଁ।" ସୁଦାମ କହିଲା।

"ମୁଁ କ'ଣ ମନା କରୁଛି ସେଥିପାଇଁ? ତମର ଯେପରି ଖୁସି।" ଗୋକୁଳ କହିଲା।

ତା'ପରେ ଦୁହେଁ ମୁଖିଆଙ୍କ ପାଖକୁ ଗଲେ। ଗୋକୁଳ କହିଲା, "ମୁଖିଆବାବୁ, ଆପଣ ଦୟାକରି ଆମ ସମସ୍ୟାର ସମାଧାନ କରନ୍ତୁ। ଗତବର୍ଷ ସଂକ୍ରାନ୍ତି ଦିନ ସୁଦାମ ମୋଠାରୁ କୁକୁଡ଼ାଟିଏ କିଣିଲା। ପଇସା ଦେବ ଆଜି। ଇତିମଧ୍ୟରେ ବର୍ଷେ ବିତିଗଲାଣି। କୁକୁଡ଼ାଟିର କେତେ ଡିମ୍ବ ହୁଅନ୍ତା ଓ ସେଥିରୁ କେତେ ଛୁଆ ହୁଅନ୍ତେ ଓ ସେମାନେ ପୁଣି ବଡ଼ ହୋଇ କେତେ ଡିମ୍ବ ଦିଅନ୍ତେ ସବୁ ତ ହିସାବ



କରି ମୁଁ ଏବେ ଅଢ଼େଇଶ ଟଙ୍କା ଦାମ କରିଛି । ମୁଁ ଅଧଲାଏ ମଧ୍ୟ ଅଧିକା ନେଉନାହିଁ । ଆପଣ ଯାହା କହିବେ ଆମେ ଦୁହେଁ ମାନିନେବୁ ।"

ମୁଖିଆ ଖାତାଟିକୁ ନେଇ ତଳୁ ଉପର ଓ ଉପରୁ ତଳ କରି ପାଞ୍ଚଥର ହିସାବଟିକୁ ଦେଖି କହିଲେ, "ଏ ହିସାବ ତ ଏକବାରେ ଠିକ୍ ।"

"ମୁଁ ତ ସେଇକଥା ତାକୁ ଆରମ୍ଭରୁ କହୁଥିଲି । ସେ ଅକାରଣରେ ଆପଣଙ୍କୁ ହଇରାଣ କଲା । ବିଚରା ପାଠଶାଠ ପଢ଼ିନି ତ । ହିସାବ ଜାଣିବ କୁଆଡ଼ୁ ?" ଗୋକୁଳ ଦମ୍ଭ ଦେଖାଇ କହିଲା ।

ସୁଦାମ ହତାଶ ହୋଇ ଘରକୁ ଲେଉଟି ଆସିଲା । ବାଟରେ ସରପଞ୍ଚଙ୍କ ସହିତ ଦେଖା ହେଲା । ସୁଦାମକୁ ଦେଖି ସରପଞ୍ଚ ପଚାରିଲେ, "ସୁଦାମ, ତମ ମୁହଁ ଆଜି ଏତେ ଶୁଖିଲା ଦିଶୁଛି କାହିଁକି ? କଥା କ'ଣ ?" ସୁଦାମ ସମସ୍ତ କଥା ବର୍ଣ୍ଣନା କଲା ।

"ଆରେ ମୁଖିଆ ମଧ୍ୟ ଏପରି ଅନ୍ୟାୟ କଲା ? ତୁମେ ଗୋଟିଏ କାମ କର, ଗୋକୁଳକୁ ଯାଇ କୁହ କାଲି ଗାଁ ମୁଣ୍ଡରେ ପଞ୍ଚାୟତ ସଭାରେ ତା'ର ଟଙ୍କାଟା ତମେ ଦେଇଦେବ । ମୁଁ ତୁମ ପଟରେ ସାକ୍ଷୀ ହେବ ।" ସରପଞ୍ଚ କହିଲେ ।

ସୁଦାମ ଗୋକୁଳ ଘରକୁ ଯାଇ ଏକଥା କହିବାରୁ ସେ ରଗିଯାଇ କହିଲା, "ଥରେ ତ ସମାଧାନ ହେଲା । ପୁଣି ପଞ୍ଚାୟତ ସଭାକୁ କଥା କାହିଁକି ଯିବ ?"



"ତମ ପାଇଁ ସମାଧାନ ହୋଇଛି ସତ, ମୋ ପାଇଁ ନୁହେଁ । ମୁଁ ଏହାର ଅଗମୂଳ କିଛି ବୁଝି ପାରୁନାହିଁ । ସରପଞ୍ଚ ମୋ ପକ୍ଷରୁ କହିବେ । ତମେ ଯେବେ ହିସାବ ଠିକ୍ ରଖିଛ ଡରୁଛ କାହିଁକି?" ସୁଦାମ କହିଲା ।

"ଡରିବ କାହାକୁ? ଆଉ କାହିଁକି ବା । ଆସ କାଲିକି ଯିବା ।" ଗୋକୁଳ କହିଲା ।

ପରଦିନ ଗାଁ ମୁଣ୍ଡ ମନ୍ଦିର ପ୍ରାଙ୍ଗଣରେ ଗାଁ ଲୋକମାନେ, ମୁଖିଆ, ସୁଦାମ, ଗୋକୁଳ ସମସ୍ତେ ଯାଇ ଜମା ହେଲେ । କିନ୍ତୁ ସରପଞ୍ଚଙ୍କର ଦେଖା ନାହିଁ । ସମସ୍ତେ ସୁଦାମକୁ ଥଟ୍ଟା କରି ହସି ଉଡ଼ାଇଲେ । କିନ୍ତୁ ସଭା ଲୋକମାନେ ଫେରିଯିବା ପୂର୍ବରୁ ଡେରିକରି ଆସି ପହଞ୍ଚିଲେ ସରପଞ୍ଚ ।

"ଡେରି ହୋଇଯିବାରୁ ମୁଁ ଅତ୍ୟନ୍ତ ଦୁଃଖିତ । କିନ୍ତୁ ଆଜି ମୂଲିଆମାନଙ୍କର ଧାନ ବୁଣିବାର ଥିଲା । ମୁଁ ସେ ଧାନଗୁଡ଼ିକୁ ସିଝାଇ ମୂଲିଆମାନଙ୍କୁ ଧରାଇ ଦେଇ ଆସିଲି । ସେଥିପାଇଁ ଡେରି ହେଲା ।" ସରପଞ୍ଚ ଡେରି ହେବାର କାରଣ ଦର୍ଶାଇ କହିଲେ ।

"ଏଁ, କ'ଣ କହିଲେ? ଧାନ ବୁଣିବା ଆଗରୁ ସିଝାଇ ଦେଲେ? ହାଃ, ହାଃ, ହାଃ, ହାଃ, କି କଥା କହୁଛନ୍ତି? ଏ ତ ଅଜବ କଥା ।" ମୁଖିଆ ଏକଥା କହି ହସି ହସି ଗଡ଼ିଗଲେ ।

"କଥା କ'ଣ କି ସୁଦାମ ଗତବର୍ଷ ସଙ୍କ୍ରାନ୍ତିରେ ଯେଉଁ କୁକୁଡ଼ାଟି ମାରି ଖାଇଛି ତା'ର ଯଦି ସାତ ବର୍ଷ ଧରି ଅଣ୍ଡା ଓ ଅଣ୍ଡାରୁ ଛୁଆ ପୁଣି ସେମାନଙ୍କର ଅଣ୍ଡା ସବୁ ମିଶି କୁକୁଡ଼ାର ଦାମ ଅଢ଼େଇଶ ହୁଏ; ତେବେ ସିଝାଧାନ ବୁଣାହେଲା ଯେ ଅଜବ କାହିଁକି ଲାଗିଲା ଆପଣଙ୍କୁ?" ସରପଞ୍ଚ କହିଲେ ।

ଏକଥା ଶୁଣି ସମସ୍ତେ ହସି ହସି ବେଦମ୍ ହେଲେ । ଗୋକୁଳ ଆଉ କୁକୁଡ଼ାର ମୂଲ୍ୟ କଥା ଉଠାଇ ନାହିଁ ।





# ନରକବାସୀ

କାଶୀ ରାଜ୍ୟରେ ସେତେବେଳେ ରାଜା ବ୍ରହ୍ମଦତ୍ତ ଶାସନ କରୁଥା'ନ୍ତି । ତାଙ୍କ ରାଜ୍ୟର ଜଣେ ବଡ଼ ବ୍ୟବସାୟୀଙ୍କର ପୁତ୍ର ଥିଲା ମିତ୍ରବିନ୍ଦ । ଧନୀ ବ୍ୟବସାୟୀଙ୍କର ଦେହାନ୍ତ ହେବା ପରେ ମିତ୍ରବିନ୍ଦର ପାପାଚରଣ କ୍ରମେ ସ୍ପଷ୍ଟ ହେବାକୁ ଲାଗିଲା । ଦିନେ ତା'ର ବିଧବା ମା' ପୁଅକୁ ଡ଼ାକି କହିଲା, "ପୁଅ, ଥରେ ତୋର ଧାର୍ମିକ ପିତାଙ୍କ କଥା ଭାବି ଦେଖ । ଏସବୁ ଛାଡ଼ ଦାନଧର୍ମ କର । ନିୟମ, ଶୃଙ୍ଖଳା ଭିତରେ ଚାଲ । ମା'ବାପର ନାମ ରଖ ।" କିନ୍ତୁ ମା'ଙ୍କ କଥାକୁ ସେ ତିଳେ ହେଲେ ମୂଲ୍ୟ ଦେଲା ନାହିଁ ।

ଇତିମଧ୍ୟରେ କାର୍ତ୍ତିକ ପୂର୍ଣ୍ଣିମା ପର୍ବ ଆସିଲା । ମା' କହିଲେ, "ପୁଅ ତୁ ଏଇ ଭଲ ଦିନରେ ବୌଦ୍ଧବିହାରକୁ ଯାଇ ସନ୍ୟାସୀମାନଙ୍କର ଉପଦେଶ ଶ୍ରବଣ କର । ସମସ୍ତଙ୍କ ସହିତ ମିଶି ଧର୍ମାଚରଣ କର । ମୁଁ ତତେ ଏକହଜାର ମୁଦ୍ରା ଦେବି ।"

ଟଙ୍କା ଲୋଭରେ ମିତ୍ରବିନ୍ଦ ରାତିରେ ଯାଇ ବୌଦ୍ଧବିହାରରେ ପହଞ୍ଚିଲା ଓ ଧର୍ମ ସଭାରେ ଯୋଗ ଦେଲା । କିନ୍ତୁ ଧର୍ମ ସମ୍ବନ୍ଧୀୟ ଆଲୋଚନା ଆରମ୍ଭ ହେଉ ହେଉ ସେ ସଭାର ଗୋଟାଏ କୋଣରେ ଶୋଇଗଲା । ସକାଳ ହେବାରୁ ଝାଡ଼ିଝୁଡ଼ି ହୋଇ ଘରକୁ ଫେରିଲା ।

ମା' ପଚାରିଲେ, "ତୁ ଏକେଲା କ'ଣ ଫେରିଲୁ ? ମୁଁ ଭାବିଥିଲି ଧର୍ମପ୍ରଚାରକଙ୍କୁ ସାଙ୍ଗରେ ଧରି ଆସିବୁ । ମୁଁ ସେଥିପାଇଁ ଦୁଇଜଣଙ୍କର ଖାଦ୍ୟ ପ୍ରସ୍ତୁତ କରିଥିଲି ।

"ମା' ତାଙ୍କୁ ଏଠାକୁ ଆଣିବାର ଆବଶ୍ୟକତା ରହିଲା କେଉଁଠି ? ମୋର ତ ତାଙ୍କ ସହିତ କିଛି କାମ ନାହିଁ ।" ମିତ୍ରବିନ୍ଦ କହିଲା ।



ଯାହାହେଉ ମା'ଠାରୁ ହଜାରେ ମୁଦ୍ରା ନେଇ କିଛି ବ୍ୟବସାୟ କରି କିଛିଦିନ ପରେ ସେ କୋଡ଼ିଏ ଲକ୍ଷ ଟଙ୍କା ପାଇ ପାରିଲା। ସେଥିରେ ସେ ସନ୍ତୁଷ୍ଟ ନ ହୋଇ ବୋଇତଟିଏ କିଣିଲା। ମାଲ ସବୁ କିଣି ବୋଇତରେ ଲଦିଲା। ତା' ପରେ ମା'ଙ୍କର ଅନୁମତି ଆଣିବାକୁ ଗଲା ବିଦେଶ ଯିବାପାଇଁ।

ସବୁକଥା ଶୁଣି ମା' କହିଲେ, "ତୁ ମୋର ଏକମାତ୍ର ସନ୍ତାନ। ଆମ ଘରେ ଯେତେ ଧନ ଅଛି, ବସି ଖାଇଲେ ମଧ୍ୟ ସରିବ ନାହିଁ। ମୁଁ ଚାହେଁ ତୁ ଘରେ ରହିବୁ।"

କିନ୍ତୁ ସିନ୍ଦବାଦ ମା'ଙ୍କ କଥା ଶୁଣିଲା ନାହିଁ; ମା'ର ହାତରୁ ହାତ ଛଡ଼ାଇ ନେଇ ମା'ଙ୍କୁ ଠେଲି ଫୋପାଡ଼ି ଦେଇ ଚାଲିଗଲା। ସେହିଦିନଠୁଁ ସେ ସମୁଦ୍ର ଯାତ୍ରା ଆରମ୍ଭ କରିଦେଲା। ସାତଦିନ ଧରି ବୋଇତଟି ଭଲରେ ଚାଲିଥିଲା। ଆଠଦିନ ଦିନ ଆଉ ଆଗକୁ ଚାଲିଲା ନାହିଁ। ମହା ବିପଦ, ମଝିସମୁଦ୍ରରେ ସମସ୍ତେ ବୁଡ଼ି ମରିବେ। ସେମାନେ ପୂଜା ଆଦି କରି ଜାଣିଲେ ଜଣେ ଲୋକର ପାପରୁ ଏପରି ହେଉଛି। ସେମାନେ ଧର୍ମଗୁଳା କରି ଦେଖିଲେ ତିନିଥରଯାକ ସିନ୍ଦବାଦର ନାମ ଉଠିଲା। ଜଣକ ପାଇଁ କି ସମସ୍ତେ ମରିବେ? ଶେଷରେ ତାକୁ ଗୋଟିଏ ଛୋଟ ନୌକାରେ ଓହ୍ଲାଇ ଦେଇ ବୋଇତ ନେଇ ସେମାନେ ଚାଲିଗଲେ।

ବହୁଦିନ ବିପଦ ମଝିରେ ପଡ଼ି ପଡ଼ି ଅଧାମରା ଅବସ୍ଥାରେ ଗୋଟିଏ ଦ୍ୱୀପରେ ଯାଇ ସେ ପହଞ୍ଚିଲା। ସେଠାରେ ଥିଲା ଏକ ଝଙ୍କମଲମଲ ପଥରର ବଡ଼ ପ୍ରାସାଦ। ସେଥିରେ ଥିଲେ ଚାରୋଟି ପିଶାଚୀ। ସେମାନେ ସାତଦିନ ବିଳାସପୂର୍ଣ୍ଣ ଜୀବନ କଟାନ୍ତି ଓ ସେସବୁ ପାପକ୍ଷାଳନ ପାଇଁ ପୁଣି ସାତଦିନ ଧର୍ମାଚରଣ, ଉପବାସ ଆଦି କରନ୍ତି। ସିନ୍ଦବାଦ ସେମାନଙ୍କ ସହିତ ବିଳାସପୂର୍ଣ୍ଣ ଜୀବନ କଟାଇଲା। ସେମାନେ ଉପବାସ କରିବାକୁ ଆରମ୍ଭ କରିବାରୁ ସେ ତା'ର ଡଙ୍ଗୀ ନେଇ ସେଠୁ ପଳାଇଗଲା।

କିଛିଦିନ ସମୁଦ୍ର ଯାତ୍ରା କରି ଅନ୍ୟ ଏକ ଦ୍ୱୀପରେ ପହଞ୍ଚିଲା। ସେଠାରେ ଆଠଜଣ

ପିଶାଚନୀ ବାସ କରୁଥାନ୍ତି । ସେଠାରେ ମଧ୍ୟ ସେମାନେ ସେଇପରି ଜୀବନ ବିତାଉଥା'ନ୍ତି । ମିତ୍ରବିନ୍ଦ ସେମାନଙ୍କ ସହିତ ଥିଲା । ସେମାନେ ବ୍ରତ ଆରମ୍ଭ କରିବାରୁ ସେ ସେଠାରୁ ପଳାଇଗଲା । ସେଠାରୁ ଯାଇ ସେ ଆଉ ଗୋଟାଏ ଦ୍ୱୀପରେ ପହଞ୍ଚିଲା । ସେ ଦ୍ୱୀପରେ ଷୋହଳ ଜଣ ପିଶାଚନୀ ଥା'ନ୍ତି । ସେମାନେ ମଧ୍ୟ ସେଇପରି ଜୀବନ ବିତାଉଥା'ନ୍ତି । ସେଠାରେ ମଧ୍ୟ ମିତ୍ରବିନ୍ଦ କିଛିଦିନ ରହି ସେମାନଙ୍କର ବ୍ରତ ଆରମ୍ଭ ହେବା ମାତ୍ରେ ସେଠାରୁ ପଳାଇଗଲା । ଅବଶେଷରେ ଯାଇ ଏକ ଦ୍ୱୀପରେ ପହଞ୍ଚିଲା ଓ ଦେଖିଲା ସେଠାରେ ଚତୁର୍ଦ୍ଦିଗ ପାଚେରୀ ପରିବେଷ୍ଟିତ ଏକ ବିରାଟ ନଗରୀ । ଚାରିଦିଗରେ ଚାରୋଟି ଦ୍ୱାର । ସେଇଟା ଥିଲା ପ୍ରକୃତରେ ନରକ । କିନ୍ତୁ ମିତ୍ରବିନ୍ଦ ସେ ନଗରୀ ଦେଖି ଖୁବ୍ ଖୁସି ହୋଇ ଭାବିଲା, "ମୁଁ ଯଦି ଏଇଠି ରାଜା ହୋଇ ରହନ୍ତି ତ କେତେ ଭଲ ନ ହୁଅନ୍ତା!"

ବହୁ ଚେଷ୍ଟା କରି ନଗରୀ ମଧ୍ୟରେ ପ୍ରବେଶ କରି ସେ ଦେଖିଲା ଜଣେ ଲୋକ ଠିଆ ହୋଇଛି ଓ ତା' ମୁଣ୍ଡ ଉପରେ ଲୁହାର ଏକ ଓଜନିଆ ଚକା ଲଦା ହୋଇ ଘୂରୁଛି । ଚକାର ଧାର ଯୋଗୁ ଓ ଘୂରିବା ଯୋଗୁ ମୁଣ୍ଡ ସହିତ ଘସି ହୋଇ ଝରଝର ରକ୍ତ ବୋହୁଛି । ତା'ର ଦେହ ଲୁହା ଜଞ୍ଜିରରେ ବନ୍ଧା ହୋଇଛି, ଭୟଙ୍କର ଯନ୍ତ୍ରଣାରେ ସେ ଚିତ୍କାର କରୁଛି ।



ଏ ଦୃଶ୍ୟ ଦେଖି ମଧ୍ୟ ମିତ୍ରବିନ୍ଦ ଭାବିଲା, "ବୋଧହୁଏ ଏଇ ହେଉଛନ୍ତି ଏ ରାଜ୍ୟର ରାଜା ।" ଭୟଙ୍କର ଚକ ତା' ଆଖିକୁ ଲାଗିଲା ପଦ୍ମପରି । ତା' ଦେହର ଜଞ୍ଜିର ଏକ ଅଳଙ୍କାର ପରି ତାକୁ ଲାଗିଲା । ତା'ର ମୁମୂର୍ଷୁ ଚିତ୍କାର ମିତ୍ରବିନ୍ଦ କାନକୁ ଅତି ମଧୁର ଗୀତ ପରି ଲାଗିଲା ।

ସେ ତା'ର ଅତି ନିକଟକୁ ଯାଇ କହିଲା, "ମହାଶୟ, ଆପଣ ବହୁତ ସମୟ ଧରି ଏଇ ପଦ୍ମକୁ ଧାରଣ କରି ରହିଛନ୍ତି । ମୋତେ ମଧ୍ୟ କିଛି ସମୟ ଧାରଣ କରିବାକୁ ଦିଅନ୍ତୁ ।"

"ମହାଶୟ, ଇଏ ତ ପଦ୍ମ ନୁହେଁ, ଭୟଙ୍କର ଲୁହାର ଚକା ।" ଲୋକଟି ଉତ୍ତର ଦେଲା ।

"ଆପଣ ବୋଧେ ଏଇଟି ମୋତେ ଦେବାକୁ ଚାହାନ୍ତି ନାହିଁ, ସେଥିପାଇଁ ଏପରି କହୁଛନ୍ତି ।" ମିତ୍ରବିନ୍ଦ କହିଲା । ଲୋକଟି ଚୁପ୍ ରହିଲା ଓ ମନେ ମନେ ଭାବିଲା, "ଆଜିଠାରୁ ମୋର ପାପ ଶେଷ ହୋଇଗଲା । ଏ ଲୋକ ଠିକ୍ ମୋପରି ନିଶ୍ଚୟ ନିଜ ମା'ଙ୍କୁ ବାଡ଼େଇଛି ।" ତା'ପରେ ସେ ନିଜ ମୁଣ୍ଡରୁ ଚକଟି ଉତ୍ତାରି ଆଣି ମିତ୍ରବିନ୍ଦର ମୁଣ୍ଡ ଉପରେ ରଖିଦେଇ ଚାଲିଗଲା ।

ସେତେବେଳେ ସ୍ୱର୍ଗରେ ଇନ୍ଦ୍ରପଦରେ ଥା'ନ୍ତି ବୋଧିସତ୍ତ୍ୱ । ସେ ଅନ୍ୟାନ୍ୟ ଦେବଗଣଙ୍କ ସହ ନରକ ପରିଦର୍ଶନ କରିବାକୁ ଆସି ସେଠାରେ ପହଞ୍ଚିଲେ ।

ବୋଧିସତ୍ତ୍ୱଙ୍କୁ ଦେଖିବା ମାତ୍ରେହିଁ ମିତ୍ରବିନ୍ଦ କାନ୍ଦି କାନ୍ଦି କହିଲା, "ଭଗବାନ୍, ମୋ ଉପରେ କୃପା କରନ୍ତୁ । କହନ୍ତୁ ଏ ଭୟଙ୍କର ଚକ୍ରର ଯନ୍ତ୍ରଣାରୁ କେବେ ମୁକ୍ତି ପାଇବି ?"

ଇନ୍ଦ୍ରରୂପୀ ବୋଧିସତ୍ତ୍ୱ କହିଲେ, "ତୁମର ଅକଳନ ସମ୍ପତ୍ତି ଥାଇ ମଧ୍ୟ ତମେ ଧନ ପ୍ରତି ଲୋଭ କଲ । ପିଶାଚମାନଙ୍କ ସହିତ କେବଳ ସୁଖଭୋଗ କଲ । ଅଥଚ ମାନବଧର୍ମର ଉତ୍ତମ ମାର୍ଗ ସବୁ କେବେ ମଧ୍ୟ ଅନୁସରଣ କଲ ନାହିଁ । ପୁଣି ନିଜର ମା' ତୁମର କଲ୍ୟାଣ ପାଇଁ ଏତେ ସୁନ୍ଦର କଥା ସବୁ କହିଲେ ଅଥଚ ତମେ ଟିକେ ବି କାନ ଦେଲନାହିଁ, ଆହୁରି ତାଙ୍କୁ ଖରାପ ବ୍ୟବହାର କଲ । ପୁଣି ନରକପୁରୀର ଏଇ ଯନ୍ତ୍ରଣାଦାୟକ ଚକ୍ର ତୁମକୁ ରାଜଛତ୍ର ରୂପେ ପ୍ରତୀତ ହେଲା ବୋଲି ତୁମେ ମାଗି ନେଇଛ । ତେଣୁ ତୁମ ଜୀବନ ଥିବା ପର୍ଯ୍ୟନ୍ତ ଏହା ତୁମକୁ ଛାଡ଼ିବ ନାହିଁ ।"

ବୋଧିସତ୍ତ୍ୱଙ୍କ କଥା ଶୁଣି ସେ ନିଜର ପାପ ପାଇଁ ନୀରବରେ ଅଶ୍ରୁପାତ କଲା ଓ ନିଜର କର୍ମ ବିଷୟରେ ସଚେତନ ହୋଇ ଭଗବାନଙ୍କୁ ଆକୁଳ ପ୍ରାର୍ଥନା କଲା ଏବଂ ଶେଷରେ ବୋଧିସତ୍ତ୍ୱଙ୍କ କୃପା ଲାଭକରି ସେ ସବୁ ଯନ୍ତ୍ରଣାରୁ ମୁକ୍ତି ପାଇଲା ।





ଭାରତ-କାହାଣୀ

# ରାଣା ପ୍ରତାପ

ଆକବର ରାଜପୁତାନାର ଅଧିକାଂଶ ରାଜାଙ୍କୁ ଛଳେ ବଳେ ବା କୌଶଳେ ନିଜ ଅଧୀନକୁ ଆଣିପାରିଲେ, କିନ୍ତୁ ମେବାରର ରାଜା ରାଣା ପ୍ରତାପଙ୍କୁ ପାରିଲେ ନାହିଁ । ଏହି ଅସୀମ ସାହସୀ ଆଦର୍ଶବାଦୀ ରାଜା କଦାପି ଆକବରଙ୍କ ବଶ୍ୟତା ସ୍ୱୀକାର କଲେ ନାହିଁ ।

ଆକବର ପୂର୍ବରୁ ଥରେ ମେବାରର ରାଜଧାନୀ ଚିତୋର ଦୁର୍ଗ ଆକ୍ରମଣ କରିଥିଲେ । ରାଣା ପ୍ରତାପଙ୍କ ବାପା, ରାଣା ଉଦୟ ସିଂହ ସେତେବେଳେ ଦୁର୍ଗ ଛାଡି ପଳାଇଥିଲେ । କିନ୍ତୁ ଜୟମଲ୍ଲ ଓ ଫୁନ୍ତ ନାମକ ଦୁଇଜଣ ସାହସୀ ରାଜପୁତ ସେନାପତି ଦୁର୍ଗ ରକ୍ଷା କଲେ । ଆକବର କୌଣସି ମତେ ଦୁର୍ଗ ଭିତରକୁ ପଶିପାରିଲେ ନାହିଁ ।





ଦିନେ ରାତିରେ ଆକବର ନିଜ ସୈନ୍ୟ ଛାଉଣୀ ଚାରିପଟେ ବୁଲୁଥିବା ବେଳେ କେତେଜଣ ରାଜପୁତ ମଶାଲ୍ ଧରି ଦୁର୍ଗ ପ୍ରାଚୀର ପରୀକ୍ଷା କରୁଥିବାର ଦେଖିଲେ । ସେ ତାଙ୍କର ଜଣେ ଦେହରକ୍ଷୀ ହାତରୁ ବନ୍ଧୁକ ନେଇ ହଠାତ୍ ସେମାନଙ୍କ ଭିତରୁ ଜଣକୁ ଗୁଳି କଲେ । ଜୟମଲ୍ଲ ମଲେ । ଫୁନ୍ତ ଆଗରୁ ମରିଥିଲେ ।



ଆକବର ଦୁର୍ଗ ଅଧିକାର କଲେ । ସକାଳେ ବିଚିତ୍ର ଉପାୟରେ ଦୁଇ-ହଜାର ରାଜପୁତ୍ ସୈନ୍ୟ ଖସି ଚାଲିଗଲେ । ସେମାନେ ରାଜପୁତ୍ ସ୍ତ୍ରୀ ଓ ଶିଶୁମାନଙ୍କ ହାତ ବାନ୍ଧି ସେମାନଙ୍କୁ ନେଇଗଲେ । ଆକବରଙ୍କ ପକ୍ଷ ଭାବିଲେ, ସେମାନଙ୍କ ନିଜ ଲୋକେ ରାଜପୁତ୍ ବନ୍ଦୀମାନଙ୍କୁ ନେଇ ଯାଉଛନ୍ତି ।

ପୁତ୍ତୁ ଓ ଜୟମଲ୍ଲଙ୍କ ବୀରତ୍ୱ ଆକବରଙ୍କୁ ଅଭିଭୂତ କରିଥିଲା । ଦିଲ୍ଲୀ ଫେରିଆସି ଆକବର ତାଙ୍କ ଦୁର୍ଗ ସମ୍ମୁଖରେ ପୁତ୍ତୁ ଓ ଜୟମଲ୍ଲଙ୍କର ଦୁଇଟି ଅଶ୍ୱାରୋହୀ ପ୍ରସ୍ତର ମୂର୍ତ୍ତି ସ୍ଥାପନ କରି ସେ ଦୁଇ ବୀରଙ୍କ ପ୍ରତି ନିଜର ସମ୍ମାନ ପ୍ରଦର୍ଶନ କଲେ । ଏହା ଆକବରଙ୍କ ଚରିତ୍ରର ଏକ ବିଶେଷ ଗୁଣ ଥିଲା ।






ଚିତୋରର ପତନ ହେବା ସତ୍ତ୍ୱେ ରାଣା ପ୍ରତାପ ମୋଗଲମାନଙ୍କ ବିରୁଦ୍ଧରେ ଲଢ଼ିବାରୁ ବିରତ ହେଲେନାହିଁ । ତାଙ୍କ ସାନଭାଇ ସୁକ୍ତ ଆକବରଙ୍କ ପକ୍ଷରେ ଯୋଗ ଦେଲେ । ଦିନେ ଏକ ଗିରିସଙ୍କଟ ଭିତର ଦେଇ ମୋଗଲ ବାହିନୀ ଆସଫ ଖାଁ, ସୁକ୍ତ ଓ ସେଲିମ୍‌ଙ୍କ ନେତୃତ୍ୱରେ ରାଣା ପ୍ରତାପଙ୍କୁ ଗୋଡ଼ାଉ-ଥାନ୍ତି । ରାଣା ତାଙ୍କ ପ୍ରିୟ ଅଶ୍ୱ ଚୈତକ ଉପରେ ସବାର ହୋଇଥାନ୍ତି ।



ଚୈତକ ଆହତ ହୋଇଥାଏ । ତଥାପି ପବନ ବେଗରେ ସେ ଦୌଡ଼ୁଥାଏ । ହଠାତ୍ ରାଣା ପଛରୁ ଶୁଣିଲେ, "ହୋ ଘୋଡ଼ସବାର ! ସବୁର କର !" ରାଣା ପ୍ରତାପ ବୁଲିପଡ଼ି ଦେଖିଲେ, ସୁକ୍ତ ପ୍ରାୟ ପାଖରେ ପହଞ୍ଚି ଗଲେଣି । ସେତିକିବେଳେ ତାଙ୍କ ଚୈତକ ମୃତପ୍ରାୟ ପଡ଼ିଗଲା । "ଭାଇ, ତମେ ମୋ ଘୋଡ଼ା ନେଇ ଚାଲିଯାଅ !" ସୁକ୍ତ କହିଲେ । ରାଣା ତାହାହିଁ କଲେ ।

ବଣରୁ ବଣକୁ ରାଣା ପ୍ରତାପ ନିଜ ସ୍ତ୍ରୀ ପିଲାପିଲିଙ୍କୁ ନେଇ ବୁଲୁଥାନ୍ତି । ଦୁଃଖ କଷ୍ଟ ପ୍ରତି ତାଙ୍କର ଖାତିର୍ ନଥାଏ । ଥରେ ଶତ୍ରୁ ସେମାନଙ୍କ ଗୋପନ ଆଶ୍ରୟ ଘେରିଗଲେ । ବନବାସୀ ଭିଲ୍ ମାନେ ରାଣାପ୍ରତାପଙ୍କ ଶିଶୁମାନଙ୍କୁ ଫଳ ପାଛିଆରେ ପୁରାଇ ସେ ଅଞ୍ଚଳ ବାହାରକୁ ନେଇଗଲେ । ଏହିପରି ଭାବରେ ଦିନ ବିତୁଥାଏ ।





ବଣର ଫଳମୂଳ ଖାଇ ରାଣା ପ୍ରତାପଙ୍କ ସନ୍ତାନମାନେ ତୃପ୍ତି ରହୁଥାନ୍ତି । ଗଛରେ ଟଙ୍ଗା ହୋଇଥିବା ଦୋଳିରେ ସେମାନେ ବିଶ୍ରାମ କରୁଥାନ୍ତି । (ଜଭର ବଣ ଭିତରେ ଆଜିଯାଏ ଗଛ ଦେହରେ ରାଣାଙ୍କ ପରିବାରକମାନେ ଯେଉଁ ଲୁହା ବଳା ଲଗାଇଥିଲେ ତାହା ଦେଖିବାକୁ ମିଳେ ।) ଏ ସମସ୍ତ କଷ୍ଟ ସତ୍ତ୍ୱେ ରାଣା ପ୍ରତାପ ଆତ୍ମସମର୍ପଣ କରିବାକୁ ପ୍ରସ୍ତୁତ ନଥିଲେ ।

ଥରେ ରାଣା ପ୍ରତାପଙ୍କ କନ୍ୟା ହାତରୁ ଖଣ୍ଡିଏ ପିଠା ଝାମ୍ପିନେଇ ବଣ ବିଲେଇଟିଏ ପଳାଇଗଲା । ରାଜକନ୍ୟା କାନ୍ଦିଲେ । କାରଣ ସେଦିନ ପାଇଁ ସେଇ ଖଣ୍ଡିକ ଥିଲା ତାଙ୍କର ଏକମାତ୍ର ଖାଦ୍ୟ ସାମଗ୍ରୀ । ରାଣାପ୍ରତାପ ମଧ୍ୟ ସେ ଦୃଶ୍ୟ ଦେଖି ଅଶ୍ରୁ ସମ୍ବରଣ କରିପାରିଲେ ନାହିଁ । କିନ୍ତୁ ବିପଦ ପରେ ବିପଦ ତାଙ୍କୁ ଅଧିକରୁ ଅଧିକ ଦୃଢ଼ମନା କଲା ।






ସାହସ ଓ ତେଜର ଉଜ୍ଜ୍ୱଳ ପରାକାଷ୍ଠା ପ୍ରଦର୍ଶନ କରି ରାଣା ପ୍ରତାପ ନିଜ ପ୍ରତିରୋଧ ବଜାୟ ରଖିଲେ । କ୍ରମେ ମେବାରର ଭିନ୍ନ ଭିନ୍ନ ଅଞ୍ଚଳକୁ ସେ ମୋଗଲ ଅଧିକାରରୁ ମୁକ୍ତ କରିବାକୁ ସମର୍ଥ ହେଲେ । ସେ ହେଲେ ଏକମାତ୍ର ରାଜପୁତ୍ ରାଜା ଶେଷ ପର୍ଯ୍ୟନ୍ତ ଯାହାଙ୍କୁ ଆକବର ବଶ କରିପାରିଲେ ନାହିଁ ।

ଭାରତ ଇତିହାସରେ ରାଣା ପ୍ରତାପଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଛି । ରାଜପୁତ ଚରିତ୍ରର ସମସ୍ତ ବୈଶିଷ୍ଟ୍ୟ ତାଙ୍କ ଜୀବନରେ ଉଜ୍ଜ୍ୱଳ ଭାବରେ ପ୍ରତିଫଳିତ ହୋଇଥିଲା । ଆଜୀବନ ସଂଗ୍ରାମ ଚାଲୁ ରଖି ସେ ୧୫୯୭ରେ ପ୍ରାଣ ତ୍ୟାଗ କଲେ । ଆଜି ବି ତାଙ୍କ ନାମ ଶିହରଣ ଆଣିଦିଏ ।



# ବିଚିତ୍ର ବିଚାର

CHITRA

ବହୁ ପ୍ରାଚୀନ କାଳର କଥା । କଳିଙ୍ଗ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଗୋଟିଏ ରାଜ୍ୟରେ ବିଗୁର ସକାଶେ ରାଜା ଗୋଟିଏ ବିଚିତ୍ର ପ୍ରଥାର ପ୍ରବର୍ତ୍ତନ କରିଥିଲେ । ଜଣେ ମହାପୁରୁଷଙ୍କ-ଠାରୁ ରାଜା ଗୋଟିଏ ଅପୂର୍ବ କତୁରୀ ପାଇଥିଲେ । ସେତେବେଳେ ଦୁଇ ପକ୍ଷ ବିବାଦ କରି ରାଜାଙ୍କ ଆଖରେ ଆସି ଫେରାଦ ହେଉଥିଲେ, ସେତେବେଳେ ରାଜା ସେମାନଙ୍କୁ ସେ କତୁରୀ ପାଖକୁ ଯିବାକୁ କହୁଥିଲେ । କତୁରୀ ଟଙ୍ଗା ହୋଇଥାଏ । ତାହାର ଦୁଇ କରତ ମଝିରେ ହାତ ରଖି ଅଭିଯୋଗକାରୀ ନିଜ ଅଭିଯୋଗ କହେ । ଯଦି ସେ ମିଛ ଅଭିଯୋଗ କରୁଥାଏ, ତେବେ କତୁରୀ ବଳେ ବଳେ ତା' ହାତ କାଟିଦିଏ । ଯଦି ହାତ ନ କାଟେ, ତେବେ ଅଭିଯୋଗ ସତ୍ୟ ବୋଲି ବୁଝା ପଡ଼େ ।

ତାହାପରେ ଅଭିଯୁକ୍ତ ବ୍ୟକ୍ତି କତୁରୀର ଦୁଇ କରତ ଭିତରେ ହାତ ରଖି ଅଭିଯୋଗ ଖଣ୍ଡନ କରେ । ସିଏ ଯଦି ମିଛ କହୁଥିବ, ତେବେ କତୁରୀ ନିଶ୍ଚୟ ସେ ବ୍ୟକ୍ତିର ହାତ କାଟିଦେବ ।

ଦୁଇ ବିବାଦମାନ ବ୍ୟକ୍ତିଙ୍କ ଭିତରୁ ଯେ କୌଣସି ଜଣଙ୍କ ହାତ କଟି ଯାଉଥାଏ । ଅନେକ ବର୍ଷ ଧରି ଏ ପ୍ରଥା ଚାଲି ରହିଥାଏ । ସମସ୍ତେ ବିଶ୍ୱାସ କରୁଥାନ୍ତି, ସେ ପବିତ୍ର କତୁରୀ କେବେହେଲେ ଭୁଲ୍ କରେ ନାହିଁ । ଅଧିକାଂଶ କ୍ଷେତ୍ରରେ କତୁରୀ କାହାରି ହାତ କାଟିବା ଯାଏ କଥା ଯାଉ ନଥାଏ ! ଦୁଇ ବିବଦମାନ ପକ୍ଷ କତୁରୀ ପାଖକୁ ଆସିଗଲେ ଯିଏ ଦୋଷୀ, ସେ ନିଜ ହାତ କଟିଯିବା ଭୟରେ ଦୋଷ ସ୍ୱୀକାର କରି ରାଜା ଯାହା କିଛି ଦଣ୍ଡ ଦେବେ ତାହା ଗ୍ରହଣ କରିବାକୁ

ସୁରେନ୍ଦ୍ର



ରାଜା ହୋଇ ଯାଉଥାଏ । ଯଦି ଅଭିଯୋଗ-କାରୀ କ୍ଷମା କରି ଦେଉଥାଏ, ତେବେ କଥା ସେଇଠି ଛିଡ଼ି ଯାଉଥାଏ । କଉରୀକୁ ସମସ୍ତେ ଯେତିକି ଶ୍ରଦ୍ଧା ସେତିକି ଭୟ ମଧ୍ୟ କରୁଥାନ୍ତି । ତେବେ କଉରୀ ଯୋଗୁଁ ରାଜ୍ୟରେ ଯେ ଅପରାଧ କମ୍ ହୋଇ ଯାଇଥାଏ, ଏଥିରେ ସନ୍ଦେହ ନାହିଁ । ବିଚାରକମାନଙ୍କର କାମଦାମ ମଧ୍ୟ ସହଜ ହୋଇଯାଇଥାଏ ।

ଥରେ ଦୁଇ ବେପାରୀଙ୍କ ଭିତରେ କଳହ ହେଲା । ପ୍ରଥମ ଜଣକ ରାଜାଙ୍କ ପାଖରେ ଅଭିଯୋଗ କଲା କି ସେ ହଜାରେ ସ୍ୱର୍ଣ୍ଣମୁଦ୍ରା ଦ୍ୱିତୀୟ ବେପାରୀ ଜିମା ରଖି ବିଦେଶକୁ ଯାଇଥିଲା । କିନ୍ତୁ ଦ୍ୱିତୀୟ ବେପାରୀ ତା' ସହ ପ୍ରତାରଣା କରୁଛି । ସିଏ ସ୍ୱର୍ଣ୍ଣମୁଦ୍ରା ରଖିନାହିଁ ବୋଲି କହୁଛି ।

ଦୁଇ ବେପାରୀ ରାଜାଙ୍କ ଦରବାରରେ ହାଜର ହେବା ପାଇଁ ରାଜା ନିର୍ଦ୍ଦେଶ ଦେଲେ ।

ରାଜା ପଚାରିବାରୁ ଦ୍ୱିତୀୟ ବେପାରୀ କହିଲା, "ମହାରାଜ! ଇଏ ବିଦେଶ ଯାଉଥିଲା କି ତା ମୁଁ ଜାଣେ ନାହିଁ । ସ୍ୱର୍ଣ୍ଣମୁଦ୍ରା କେଉଁଠାରେ ଥିଲା ତାହା ମୁଁ ମୋଟେ ଦେଖିନାହିଁ । ଲୋକଟା ଛୁଟା ମିଛ କହୁଛି ।"

ରାଜା କହିଲେ, "ବେଶ୍, ତେବେ କଉରୀ ଦ୍ୱାରା ତୁମର ବିଚାର ହେବ ।" ଆଶ୍ଚର୍ଯ୍ୟର କଥା, ଏଥିରେ ପ୍ରଥମ ବେପାରୀ ସେତିକି ଖୁସି ହେଲା, ଦ୍ୱିତୀୟ ବେପାରୀ ବି ସେତିକି ଖୁସି ହେଲା ।

କହିବା ବାହୁଲ୍ୟ, ଉଭୟଙ୍କର ଏକା ପ୍ରକାର ପ୍ରତିକ୍ରିୟା ଦେଖି ରାଜା ଓ ଅମାତ୍ୟମାନେ ମଧ୍ୟ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ ।

କଉରୀ ଦ୍ୱାରା ବିଚାର ନିମନ୍ତେ ଦିନ ଓ ସମୟ ଧାର୍ଯ୍ୟ ହେଲା । ବିଚାର ଦେଖିବା ନିମନ୍ତେ ଅନେକ ଲୋକ ଜମା ହୋଇ-ଗଲେ । ରାଜା ନିଜେ ବିଚାର ସ୍ଥାନକୁ ଆସୁ ନଥାନ୍ତି । ତାଙ୍କ ଅମାତ୍ୟମାନେ ସବୁ ପରିଚାଳନା କରୁଥାନ୍ତି ।



ଯଥା ସମୟରେ ପ୍ରଥମ ବେପାରୀ କତୁରୀ ପାଖକୁ ଅଗ୍ରସର ହେଲା। କତୁରୀର ଦୁଇ କରତ ମଝିରେ ହାତ ରଖି ସେ ଉଚ୍ଚ କଣ୍ଠରେ କହିଲା, "ମୁଁ ମୋର ଏ ବନ୍ଧୁ ପାଖରେ ଏକ ହଜାର ସ୍ୱର୍ଣ୍ଣମୁଦ୍ରା ଜମା ରଖି ବିଦେଶ ଯାଇଥିଲି। ଏହା ଉପରେ ମୋର ଗଭୀର ବିଶ୍ୱାସ ଥିଲା ବୋଲି ମୁଁ ଏହା କଲି। କିନ୍ତୁ ବିଦେଶରୁ ଫେରି ଆସି ଏହାକୁ ମୋ ସମ୍ପଦ ମାଗିବାରୁ ସେ ତାହା ରଖିନାହିଁ ବୋଲି ସୋକ୍‌ଠୋକ୍ ମୋତେ କହିଦେଲା। ଲୋକେ ଯଦି ଏପରି ବିଶ୍ୱାସ-ଘାତକତା କରିବେ, ତେବେ ଜନସମାଜ ଆଉ ରହିବ କିପରି ? ମୁଁ ଯଦି ମିଛ ଅଭିଯୋଗ କରୁଥିବି, ତେବେ ମୋତେ ଦଣ୍ଡ ମିଳୁ।"

କତୁରୀ ନିଶ୍ଚଳ ରହିଲା। ଅଭିଯୋଗ ସତ୍ୟ ବୋଲି ଲୋକେ ବୁଝିଲେ ଓ କରତାଳି ଧ୍ୱନି କଲେ। ସମସ୍ତେ ଏଥର ଦ୍ୱିତୀୟ ବେପାରୀ ମୁହଁକୁ ଅନାଇଲେ। ତା' ମୁହଁ ଶୁଖି ଯାଇଥିବ ବୋଲି ସମସ୍ତେ ଧରି ନେଇଥିଲେ। କିନ୍ତୁ ସେପରି ମନେ ହେଲାନାହିଁ। ସେ ଗମ୍ଭୀର ହୋଇ ଠିଆ ହୋଇ ରହିଥାଏ। ଦେଖିଲେ ମନେହେବ ସେ ଯେପରି କୌଣସି ଅନ୍ୟାୟ କରିନାହିଁ। ତେଣୁ ତା'ର କାହାକୁ ଡର ନାହିଁ। ଅମାତ୍ୟମାନେ ଦ୍ୱିତୀୟ ବେପାରୀକୁ କତୁରୀ ପାଖକୁ ଯିବାକୁ ନିର୍ଦ୍ଦେଶ ଦେଲେ।

ସେ ଅବିଚଳିତ ଭାବରେ ଖଣ୍ଡିଏ ବାଡ଼ି ଧରି କତୁରୀ ପାଖକୁ ଗଲା ଓ ବାଡ଼ି ଖଣ୍ଡିକ ପ୍ରଥମ ବେପାରୀକୁ ଧରିବାକୁ କହି କତୁରୀ ମଝିରେ ହାତ ରଖି ସେ କହିଲା, "ମୁଁ ଲୁଆଡ଼େ ଏହାର ହଜାରେ ସ୍ୱର୍ଣ୍ଣମୁଦ୍ରା ରଖିଛି, ଏ ଅଭିଯୋଗ ଠିକ୍ ନୁହେଁ। ତା' ସମ୍ପଦ ତା' ନିଜ ପାଖରେ ଅଛି। ମୋ କଥା ମିଥ୍ୟା ହୋଇଥିଲେ ନିଶ୍ଚୟ ମୋତେ ଦଣ୍ଡ ମିଳୁ।"

ସମସ୍ତେ ଭାବୁଥିଲେ ଏଥର କତୁରୀ ସଚଳ ହେବ। କିନ୍ତୁ ଆଶ୍ଚର୍ଯ୍ୟର କଥା ତାହା ନିଶ୍ଚଳ ରହିଲା। ଦ୍ୱିତୀୟ ବେପାରୀ ସଗର୍ବେ ହାତ ଫେରାଇ ଆଣିଲା ଓ

ପ୍ରଥମ ବେପାରୀଠାରୁ ନିଜ ବାଡ଼ି ଖଣ୍ଡିକ ଫେରାଇ ଆଣି ସେଠାରୁ ଚାଲିଯିବାକୁ ଉଦ୍ୟତ ହେଲା ।

ଜନତା ଭିତରେ ଗୁଞ୍ଜରଣ ଖେଳିଗଲା । ସେମାନେ କାଜୀର ଏପରି ବ୍ୟବହାର କେବେ ଦେଖି ନଥିଲେ । ଉଭୟେ ସତ କହୁ ନଥିବେ । ସେପରି ହେବା ସମ୍ପୂର୍ଣ୍ଣ ଅସମ୍ଭବ । ଦୁଇଜଣଙ୍କ ଭିତରୁ କେହି ଜଣେ ମିଛ କହୁଥିବାକୁ ବାଧ୍ୟ । କିନ୍ତୁ କାଜୀ ନିଶ୍ଚଳ ରହିଲା କିପରି ?

"କାଜୀର ଗୁଣ ଏବେ ଶେଷ ହୋଇ ଗଲାଣି !" ଜଣେ ଦର୍ଶକ ଏପରି କହିଲେ । କେହି କେହି ତାଙ୍କ କଥାରେ ଏକମତ ହେଲେ ।

ହଠାତ୍ ଜଣେ ଅମାତ୍ୟ ପାଟି କରି କହିଲେ, "ବାବୁ ଟିକିଏ ରହିଯାଅ !"

ସେ ଆଗକୁ ଯାଇ ଦ୍ୱିତୀୟ ବେପାରୀ ହାତରୁ ବାଡିଟି ଛଡ଼ାଇ ଆଣି ହଠାତ୍ ତାକୁ ଭାଙ୍ଗି ଦେଲେ । ସମସ୍ତଙ୍କ ଆଗରେ ତା' ଭିତରୁ ଗଳଗଳ ହୋଇ ସ୍ୱର୍ଣ୍ଣମୁଦ୍ରା ଝରି ପଡ଼ିଲା ।

ପ୍ରଥମେ ସମସ୍ତେ ହତବାକ୍ ରହିଲେ । ତା'ପରେ ବିପୁଳ କରତାଳି ଧ୍ୱନି ହେଲା ଓ ସମସ୍ତେ ହସିଲେ ମଧ୍ୟ । ଦ୍ୱିତୀୟ ବେପାରୀ ବାଡ଼ିଟି ପ୍ରଥମ ବେପାରୀକୁ ଧରାଇ ଦେଇ କାଜୀଙ୍କୁ କହିଥିଲା କି ତା' ସମ୍ପଦ ତା'ଠିଁ ରହିଛି । ସେହି ମୁହୂର୍ତ୍ତରେ ମୋହରତକ ବାସ୍ତବିକ ପ୍ରଥମ ବେପାରୀ ହାତରେହିଁ ଥିଲା !

ସମସ୍ତେ ଅମାତ୍ୟଙ୍କ ବୁଦ୍ଧିର ପ୍ରଶଂସା କଲେ । ରାଜା ସବୁ ଶୁଣି ତାଙ୍କୁ ମନ୍ତ୍ରୀପଦକୁ ଉନ୍ନୀତ କଲେ ।

ତେବେ ସେହିଦିନରୁ କାଜୀ ଉପରେ ନିର୍ଭର ନକରି ରାଜା ବିଚାରକମାନଙ୍କ ଉପରେ ନିର୍ଭର କଲେ । କାଜୀକୁ ଯାଦୁଘରେ ରଖା ହେଲା ।





# ପୁରସ୍କାର

ଅନେକ ଦିନ ପୂର୍ବର କଥା । ବାଗଦାଦ ସହରରେ ଜଣେ ଧନୀ ବୃଦ୍ଧ ବାସ କରୁଥା'ନ୍ତି । ତାଙ୍କର ପ୍ରାସାଦଟି ନଗରର ଠିକ୍ ମଧ୍ୟ ସ୍ଥଳରେ ଥାଏ । ସୁନ୍ଦର ବଗିଚା ଓ ଶଙ୍ଖମଲମଲ ପଥରର ଘର ସବୁରେ ପ୍ରାସାଦଟି ଅତି ସୁନ୍ଦର ଦେଖାଯାଉଥାଏ । ବୃଦ୍ଧଙ୍କ ପାଖରେ ଥା'ନ୍ତି ଅନେକ ଚାକରବାକର, ପୂଝାରି, ଖମାରି ଓ ଧନ ରକ୍ଷାକରିବା ପାଇଁ ଅନେକ ଲୋକ । କିନ୍ତୁ ଏସବୁ ଐଶ୍ୱର୍ଯ୍ୟ ସତ୍ତ୍ୱେ ବୃଦ୍ଧଙ୍କର ଗୋଟିଏ ବଦଭ୍ୟାସ ଥାଏ । ସେ କୌଣସି ଦୁଃଖି ଭିକାରିଙ୍କୁ ଦେଖିଲେ ଘରକୁ ଡାକିଆଣି ସେମାନଙ୍କ ସହିତ ନାନା ପ୍ରକାର ଦୁର୍ବ୍ୟବହାର ଓ ଥଟ୍ଟାତାମସା କରି, ଅପମାନ ଦେଇ ଓ କୌଣସି ପଇସା ନ ଦେଇ ଫେରାଇ ଦେଉଥା'ନ୍ତି । ସେଇଟା ଥିଲା ତାଙ୍କର ମନୋରଞ୍ଜନ କରିବାର ଅନ୍ୟତମ ପନ୍ଥା ।

ଥରେ ସକ୍କାସିକ ନାମରେ ଜଣେ ଗରିବ ଦୁଃଖି ଆସି ବୃଦ୍ଧଙ୍କ ନିକଟରେ ପହଞ୍ଚି ସଲାମ କରି କିଛି ଖାଇବାକୁ ମାଗିଲା । ବୃଦ୍ଧଙ୍କର ଏପରି ଦୁର୍ବ୍ୟବହାର ଯୋଗୁ ଅନେକ ଦିନ ଧରି କେହି ଆସୁ ନଥିଲେ । ଆଜି ଏତେଦିନ ପରେ ଶୀକାରଟିଏ ମିଳିଛି ମନୋରଞ୍ଜନ ପାଇଁ ଭାବି ବୃଦ୍ଧ ଆନନ୍ଦରେ ଅଧୀର ହୋଇ ଉଠି କହିଲେ, "ବେଟା, ତୁମେ କି ପ୍ରକାରର ସାହାଯ୍ୟ ମୋ ପାଖରୁ ଚାହୁଁଛ । ସଙ୍କୋଚ ନ କରି କହ । ଗରିବ ଦୁଃଖିଙ୍କୁ ସାହାଯ୍ୟ କରିବାକୁହିଁ ମୋ ଜୀବନକୁ ମୁଁ ଉତ୍ସର୍ଗ କରିଛି । କୁହ ତୁମର କ'ଣ ଦରକାର ?"

"ମାଲିକ ବହୁତ ଦିନ ହେବ ଗଣ୍ଡିଏ ଭଲ କରି ଖାଇବାକୁ ମିଳିନି । ଅନାହାରରେ ମୁଁ ମୋର କାର୍ଯ୍ୟ କରିବାର ଶକ୍ତି ହରାଇ ବସିଛି । ତେଣୁ ପ୍ରଥମେ ମୋ ସକାଶେ କିଛି ଖାଦ୍ୟର

ଆରବଦେଶର କାହାଣୀ

ବ୍ୟବସ୍ଥା କରନ୍ତୁ । ଖାଇପିଇ ଟିକିଏ ଶକ୍ତି ବଢ଼ିଲେ ମୋତେ କିଛି କାମ ଦେଇ ପାରିଲେ ମୁଁ ଖୁବ୍ ଉପକୃତ ହୁଅନ୍ତି । ମୋର ବଡ଼ ଭାଗ୍ୟ ଆଜି ଆପଣଙ୍କ ପରି ଦୟାଳୁ ଧନୀ ବ୍ୟକ୍ତିଙ୍କ ସହିତ ସାକ୍ଷାତ ହେଲା ।" ସକ୍କାସିକ କହିଲା ।

"ହେ ଖୁଦା, ଏ କ'ଣ ହେଲା, ଏ ରାଜ୍ୟରେ ମୁଁ ଥାଉଁ ଥାଉଁ ଲୋକେ ନଖାଇ ମରିବାକୁ ପାଉଛନ୍ତି । ଏକଥା ମୁଁ କଦାପି ହେବାକୁ ଦେବିନାହିଁ । ଏଇ ବର୍ତ୍ତମାନହିଁ ମୁଁ ତୁମର ସମସ୍ତ ଖାଦ୍ୟପେୟର ବ୍ୟବସ୍ଥା କରି ଦେଉଛି । ପ୍ରଥମେ ଭିତରକୁ ଯାଇ ତୁମେ କିଛି ଖାଇ ନିଅ ପରେ ମୁଁ ଯାହା କିଛି ଦାନ ଦେବି ଏବଂ ତୁମର ଗୃହବାସର ମଧ୍ୟ ବ୍ୟବସ୍ଥା କରିଦେବି ।" ବୃଦ୍ଧ କହିଲେ ।

"ଖୋଦା ଆପଣଙ୍କୁ ସୁଖୀ କରନ୍ତୁ । ମୁଁ କ୍ଷୁଧାରେ ଜର୍ଜରିତ । ବର୍ଣ୍ଣନା କରିପାରୁନି ପେଟ ଭିତରେ କି କଷ୍ଟ ।" ସକ୍କାସିକ କହିଲା ।

"ତେବେ ତୁମେ ମୋ ସହିତ ଭିତରକୁ ଆସ ।" କହି ବୃଦ୍ଧ ତାଙ୍କର ଗୃହଚାକରଙ୍କୁ ଗୋଡ଼ହାତ ଧୋଇବାକୁ ପାଣି ରଖିବାକୁ ଓ ଖାଦ୍ୟ ପରଶିବାକୁ ଆଦେଶ ଦେଲେ । ତା'ପରେ ଦୁହେଁ ଭିତରକୁ ଗଲେ । ସେଠାରେ ପ୍ରଥମେ ଗୋଟିଏ ଭଙ୍ଗା ମାଠିଆରୁ ପାଣି ସଂଗ୍ରହ କରି ସକ୍କାସିକ ହାତ ଧୋଇଲା । ବୃଦ୍ଧ ମଧ୍ୟ ହାତ ଧୋଇବାର ଓ ପୋଛିବାର ଅଭିନୟ କଲେ ଓ କହିଲେ, "ଆଜି ମୋର ସୌଭାଗ୍ୟ, ମୁଁ ଅତିଥିଟିଏ ପାଇଛି । ଏକ



ସଙ୍ଗେ ବସି ଖାଇବା ।" ତା' ପରେ ଗୃକରମାନେ ଆସନ ପାଡ଼ି ଦେଲେ । ପରେ ମିଛୁମିଛୁକା ଖାଦ୍ୟ ବାଢ଼ିଲେ । କେବଳ ଶୂନ୍ୟରେ ହାତ ହଲେଇ ଜିନିଷ ପରଶୁଥା'ନ୍ତି । ଏସବୁ ଦେଖି ସକ୍‌କାଫିକ ବୃଦ୍ଧଙ୍କର ଗୃଭୁସି ବୁଝିଗଲା ଓ କିଛି ନକହି ବୃଦ୍ଧଙ୍କ ଅଭିନୟକୁ ଅନୁସରଣ କରି ମିଛୁମିଛୁକା ଖାଇ ବସିଲା ।

ବୃଦ୍ଧ କହିଲେ, "ଦେଖ ପଲାଉଟା କି ଚମତ୍କାର ହୋଇଛି । ଆଉ ପାଏସଟା ଦେଖ । କିନ୍ତୁ ତମେ ତ କିଛି କହୁନାହଁ । ତୁମକୁ ବୋଧେ କିଛି ଭଲ ଲାଗୁନାହିଁ ।" ଏକଥା କହି ସେ ସବୁ ରକମର ଖାଦ୍ୟର ଠିକଣାଖି ବର୍ଣ୍ଣନା କରୁଥା'ନ୍ତି । ଏସବୁ ଶୁଣି ସକ୍‌କାଫିକର କ୍ଷୁଧା ଦଶଗୁଣା ବଢ଼ିଗଲା । କିନ୍ତୁ ଏଠାକାର ଅଜବ ବ୍ୟବସ୍ଥା ଦେଖି କିଛି ନ କହି ବୃଦ୍ଧଙ୍କୁ କେବଳ ଅଭିନୟରେ ଅନୁସରଣ କରୁଥାଏ । ଖାଲି ହାତ ପାଟିକୁ ନେଇ କୁହେ, "ଆଃ କି ବଢ଼ିଆ ରୋଷେଇ ହୋଇଛି, ଜୀବନରେ ମୁଁ ତ ଏପରି କେବେ ଖାଇ ନଥିଲି ।"

ତା'ପରେ ବୃଦ୍ଧ ହସି ହସି ଗଡ଼ିଯା'ନ୍ତି । ଖାଇବା ସରିବା ପରେ ବୃଦ୍ଧ ଗୃକରମାନଙ୍କୁ ଡାକି କହିଲେ ଏବେ ମିଠାଇ ଓ ହାଲୁଆ ଆଣ । ସେମାନେ ମଧ୍ୟ ଅଭିନୟ କରି ସେସବୁ ଆଣିଲେ । ସକ୍‌କାଫିକ ହାଲୁଆର ଦର୍ଶନ ମଧ୍ୟ ନ ପାଇ ଖୁବ ପ୍ରଶଂସା କଲା । ତା'ପରେ ବରାଦ ହେଲା ଫଳରସ ଓ ଅଙ୍ଗୁର ରସ । ସେସବୁ ମଧ୍ୟ ଆଣିବାର ଓ ପିଇବାର



ଅଭିନୟ ଖୁବ୍ ଜମିଗଲା । କିଛି ସମୟ ପରେ ସକ୍କାସିକ ନିଜ ଆସନରୁ ଉଠି ବୃଦ୍ଧଙ୍କୁ କସିକରି ଦୁଇଗୁପୁଡ଼ା ମାରିଲା ।

ବୃଦ୍ଧ କହିଲେ, "ହାଁ, ହାଁ, ଏ କ'ଣ? ତୁମର ତ ବଡ଼ ସାହସ । ରାସ୍ତାର ଭିକାରି । ତୁମକୁ ଘରକୁ ଡାକି ଖାଇବାକୁ ଦେବାର କି ଏହି ଫଳ?"

ତତ୍‌କ୍ଷଣାତ୍ ଚତୁର ସକ୍କାସିକ କହିଲା, "ମାଲିକ, ମୋତେ ମାଫ କରନ୍ତୁ । ଖାଇବା ପରେ ଶେଷକୁ ଯେଉଁ ଅଙ୍ଗୁର ରସ ଦିଆଗଲା ସେଇଥିରେ ମଦଭାଗଟା ଟିକିଏ ବେଶି ଥିବାରୁ ମୋର ମଥା ଠିକ୍ ଭାବରେ କାମ କଲାନାହିଁ । ମୁଁ ଇଚ୍ଛା କରି କିଛି କରିନି ମାତ୍ର ମଦର ଆବେଶରେ କରିଛି ।"

ହୋ ହୋ କରି ହସି ବୃଦ୍ଧ କହିଲେ, "ଆରେ ଚତୁର ଟୋକା, ଏପର୍ଯ୍ୟନ୍ତ ତ ମତେ ଏପରି କେହି ଠକାଇ ନଥିଲେ । ମୁଁ ଏହା ପୂର୍ବରୁ ଅନେକ ଦରିଦ୍ରଙ୍କୁ ଏହିପରି ଠକାଇ ଆନନ୍ଦ ପାଉଥିଲି । କିନ୍ତୁ ଆଜିପର୍ଯ୍ୟନ୍ତ ଅନେକ ଲୋକ ସେ ଝୁରି ଆନନ୍ଦ ଯୋଗୁ ଯନ୍ତ୍ରଣା ଭୋଗିଲେ ମଧ୍ୟ କେହି ମୋତେ ସାହସ କରି ପଦେ କଥା କହି ବାରଣ କରି ନାହାନ୍ତି । ଅହୋ, ଅର୍ଥର କି ଶକ୍ତି । ଆଉ ଆଜିଠୁ ନୁହେଁ, କଦାପି ନୁହେଁ । ଆଉ ଦେଖ ତୁମ ପାଇଁ ସବୁ ଭଲ ଜିନିଷ, ଯାହା ଯାହା ବର୍ଣ୍ଣନା କରିଛି, ସବୁ ଆଣି ଦେଉଛି ।"

ବୃଦ୍ଧଙ୍କ ବରାଦରେ ଗୃହର ଭୃତ୍ୟମାନେ ସକ୍କାସିକକୁ ପେଟଭରି ଖୁବ୍ ଖୁଆଇଲେ । ତା'ପରେ ବୃଦ୍ଧ ତାକୁ ଅନେକ ଧନରତ୍ନ ପୁରସ୍କାର ଦେଲେ । ସେହିଦିନଠାରୁ ବୃଦ୍ଧଙ୍କର ଜୀବନର ଗତିଧାରା ବଦଳିଗଲା । ଏଥର ଗରିବ, ଦୁଃଖୀ ଦେଖିଲେ ସେ ଭଲକରି ଖୁଆନ୍ତି ଓ କିଛି ଦାନ ଦେଇ ବିଦା କରନ୍ତି । ଅଳ୍ପଦିନ ମଧ୍ୟରେ ତାଙ୍କର ପୂର୍ବ ଦୁର୍ନାମ 'କୁଆଡ଼େ ଲିଭିଯାଇ ସାରା ବାଗଦାଦ୍‌ରେ ସୁନାମହିଁ ବ୍ୟାପି ଗଲା ।





# କ୍ରୂରତମ ପଶୁ

ଗୋଟିଏ ଜଙ୍ଗଲରେ ପଶୁରାଜ ସିଂହର ଶାସନରେ ସବୁ ପ୍ରକାର ପଶୁପକ୍ଷୀ ସୁଖରେ ଜୀବନଯାପନ କରୁଥିଲେ । ସେଇ ଜଙ୍ଗଲ ଥିଲା ଅତି ଘନ ଓ ବିରାଟ । ସେଠାରେ କେବେ ମଣିଷର ପାଦ ପଡ଼ି ନଥିଲା । ଏପରି ଏକ ଜଙ୍ଗଲରେ ସବୁ ପଶୁପକ୍ଷୀଙ୍କ ମଧ୍ୟରେ ଥାଏ ବତକଟିଏ । ଦିନେ ସେ ନିଘୋଡ଼ ନିଦରେ ·ଶୋଇଛି ସ୍ୱପ୍ନ ଦେଖିଲା ମଣିଷଟିଏ ଅନେକ ଦୂରରେ ଛିଡ଼ା ହୋଇ ତାକୁ ଡ଼ାକୁଛି । ବତକଟି ମଣିଷ ପାଖକୁ ଯିବାକୁ ବାହାରିଛି ଏଇ ସମୟରେ ହଠାତ୍ କିଏ ଯେପରି ତାକୁ ସାବଧାନ କରି ଦେଇ କହିଲା, "ଶୁଣ, ତମେ ସେ ଜନ୍ତୁଠାରୁ ଦୂରରେ ରୁହ । ସେ ପୃଥିବୀରେ ସବୁଠାରୁ ଭୟଙ୍କର ଓ କ୍ରୂରତମ ।" ଏକଥା ଶୁଣି ବତକ ଚମକି ପଡ଼ି ନିଦରୁ ଉଠିପଡ଼ି ଭୟରେ ଦୌଡ଼ି ପଳାଇଲା ।

କିଛି ଦୂର ଦୌଡ଼ିବା ପରେ ମୃଗରାଜ ସିଂହର ଗୁମ୍ଫା ନିକଟରେ ଯୁବରାଜ ସିଂହ ଛିଡ଼ା ହୋଇଥିବାର ବତକ ଦେଖିଲା । ଯୁବରାଜଙ୍କର ବୟସ ଅଳ୍ପ ହୋଇଥିବାରୁ ତାଙ୍କର ମା'ବାପ ତାଙ୍କୁ ବେଶି ଦୂରକୁ ଛାଡ଼ୁ ନଥିଲେ । ସେଥିପାଇଁ ଗୁମ୍ଫା ଓ ମା'ବାପଙ୍କ ଛଡ଼ା ବାହାର ଦୁନିଆଁ ସମ୍ପର୍କରେ ଯୁବରାଜଙ୍କର ବେଶି ଜ୍ଞାନ ନଥାଏ ବା ଅନ୍ୟ ଜୀବଜନ୍ତୁଙ୍କ ସହିତ ପରିଚୟ ନଥାଏ ।

ଏପରି ସ୍ଥଳେ ଗୋଟିଏ ପକ୍ଷୀ ଭୟରେ ଦୌଡ଼ୁଥିବାର ଦେଖି ଯୁବରାଜ ପଚାରିଲେ, "ହେ ପକ୍ଷୀ, ତୁମେ କେଉଁ ଜାତିର ପକ୍ଷୀ? ତମେ ଏପରି ଦୌଡ଼ୁଛ ବା କାହିଁକି ?"

"ଯୁବରାଜ ମୁଁ ବତକ ପକ୍ଷୀ । ମୁଁ ସ୍ୱପ୍ନରେ ଜଣେ ମଣିଷକୁ ଦେଖିଲି ଓ ଶୁଣିଲି କି ମଣିଷ ସବୁଠାରୁ ଭୟଙ୍କର



ଜନ୍ତୁ । ସେଥିପାଇଁ ଭୟରେ ଦୌଡ଼ୁଛୁ ।" ବତକ କହିଲା ।

"ପାଗଳ ନା କ'ଣ ? ମୁଁ ହେଉଛି ପଶୁରାଜ ସିଂହ । ମୁଁ ଯେତେବେଳେ ଅଛି ତମେ ଅନ୍ୟ କୌଣସି ଜନ୍ତୁ ପାଇଁ ଏତେ କାତର ହେବା ଶୋଭା ପାଏନାହିଁ । ମୁଁ ରାଜା, ମୁଁ ତୁମମାନଙ୍କର ରକ୍ଷାକର୍ତ୍ତା । ଚାଲ ତ ଦେଖିବା ।" ଏକଥା କହି ସିଂହ ବତକ ଆସିଥିବା ଦିଗକୁ ଚାଲିଲା । ବତକ ମଧ୍ୟ ତାହାର ଅନୁସରଣ କଲା ।

କିଛିବାଟ ଗଲା ପରେ ଦୂରରୁ ଧୂଳି ଉଡୁଥିବାର ଦେଖାଗଲା । ସିଂହ ବତକକୁ କହିଲା, "ଦେଖ, ହେଇତ ମଣିଷ ଏ ଆଡ଼କୁ ଆସୁଛି । ତମେ ଲୁଚିପଡ଼ ଓ ଦେଖ ମୁଁ କପରି ତାକୁ ମାରିଦେବି ।"

କିନ୍ତୁ ପାଖରେ ପହଞ୍ଚିଲା ପରେ ଦେଖାଗଲା ଗୋଟିଏ ଗଧ । ସିଂହ ପଚାରିଲା, "ତମେ ପୁଣି କେଉଁ ଜାତିର ପଶୁ? ଏପରି ଭୟରେ କାହିଁକି କାତର ହୋଇ ଦୌଡ଼ୁଛ?"

"ମହାରାଜ ମୁଁ ଗୋଟିଏ ଗଧ । ଆପଣ କଳ୍ପନା ମଧ୍ୟ କରିପାରିବେ ନାହିଁ ଯେ ମଣିଷ ମୋତେ କେତେ କଷ୍ଟ ଦେଇଛି । ବୋଝ ବୋହି ଓ ମାଡ଼ ଖାଇ ମୋର ଦିନ ଗଲା ଏବେ ମୋର ଖାଦ୍ୟ କମାଇ ଦେଇଛି ଓ ଅଧିକ ମାଡ଼ ଦେଉଛି; ସେ ମୋତେ ମାରି ପକାଇବ ।" ଗଧ କହିଲା ।

"ଭୟ କ'ଣ ? ମୁଁ ପଶୁମାନଙ୍କର ରାଜା । ମୁଁ ଥାଉଁ ଥାଉଁ ତୁମର କେହି କିଛି କରିପାରିବ ନାହିଁ । ମୋତେ ମଣିଷ ପାଖକୁ ନେଇଚାଲ, ଦେଖିବ ମୁଁ କପରି ତାକୁ ମାରିଦେବି ।" ସିଂହ କହିଲା ।

"ମହାରାଜ କ୍ଷମା କରନ୍ତୁ । ସେ ଭୟଙ୍କର ମଣିଷର ଦୃଷ୍ଟିରେ ମୁଁ ପୁନର୍ବାର ପଡ଼ିବାକୁ ଚାହୁଁନାହିଁ ।" ଏକଥା କହି ଗଧ ଦୌଡ଼ ପଳାଇଲା ।

ଟିକିଏ ପରେ ଦୂରରୁ ପୁଣି ଧୂଳି ଦେଖାଗଲା । ଏଥର ଆସିଲା ଗୋଟିଏ ଘୋଡ଼ା । ମୁହଁରେ ଫେଣ, ଦୌଡ଼ ଦୌଡ଼ ଧଇଁସଇଁ ହେଇଯାଉଛି । ସିଂହ ତା'ର

ଦୌଡ଼ା ବନ୍ଦ କରି ତାର ନାମ, ଜାତ ଓ ଦୌଡ଼ିବାର କାରଣ ପଚାରିଲା ।

ଘୋଡ଼ା ସଂକ୍ଷେପରେ ସବୁ ଉତ୍ତର ଦେଇ କହିଲା, "ମୁଁ ମଣିଷ ନାମକ ଏକ ଭୟଙ୍କର ଜନ୍ତୁକୁ ଡ଼ରି ପଳାଉଛି ।"

"ତମେ ତ ବେଶ୍ ବଡ଼ ଓ ବଳବାନ୍ ଜନ୍ତୁ । ତମେ ଏତେ ଡ଼ରୁଛ କାହିଁକି? ମଣିଷ କ'ଣ ତୁମଠାରୁ ବେଶି ବଡ଼ ଜନ୍ତୁ?" ସିଂହ ପଚାରିଲା ।

"ମହାରାଜ, ସେ ଅଧିକ ବଳବାନ୍ ନୁହେଁ, କିନ୍ତୁ ଅତ୍ୟନ୍ତ ଚତୁର, ଧୂର୍ତ୍ତ ଓ ନିଷ୍ଠୁର । ମୋତେ ଅନେକ ମାରିଛି । ପୁଣି ମୋ ପିଠିରେ ମୁଁ ତାକୁ ବୋହି ବୋହି ଚାଲେ । ଏବେ ମୁଁ ବୁଢ଼ା ହୋଇଯିବାରୁ ମୋତେ ମାରି ମୋ ଚମଡ଼ାଟା ନେଇଯିବାକୁ ଚାହେଁ ।" ଘୋଡ଼ା ଉତ୍ତର ଦେଲା । ତା'ପରେ ସିଂହ ତାକୁ ରହିବାକୁ ଯେତେ ଅଭୟବାଣୀ ଦେଲା, ସେ ସବୁର ଫଳ କିଛି ହେଲାନାହିଁ, ସେ ପଳାଇଲା ।

ତା'ପରେ ଆସିଲା ଓଟଟିଏ । ସେ ମଧ୍ୟ ମଣିଷ ନାମକ ଜନ୍ତୁକୁ ଡ଼ରି ପଳାଉଥିଲା । ସିଂହ ତାକୁ ବୁଝାଇଲା, 'ଦେଖ, ତମମାନଙ୍କୁ ରକ୍ଷା କରିବାର ଦାୟିତ୍ୱ ମୋର । ତମେ ଦୂରକୁ ନ ଯାଇ ଏଇଠାରେ ରୁହ । ମଣିଷକୁ ମୁଁ ଉଚିତ୍ ଶିକ୍ଷା ଦେବି ।" କିନ୍ତୁ ଓଟ ସିଂହକୁ କ୍ଷମା ମାଗି ଭୟରେ କମ୍ପି କମ୍ପି ଦଉଡ଼ି ପଳାଇଲା । ସିଂହ ଆଶ୍ଚର୍ଯ୍ୟ ହୋଇ ଭାବିଲା ମଣିଷର ଭୟ ଯୋଗୁ ସିଂହ ଉପରେ ବିଶ୍ୱାସ ମଧ୍ୟ ରଖିପାରୁ ନାହାନ୍ତି ।



କିଛି ସମୟ ପରେ ଦୂରରୁ ଦେଖାଗଲା ବୁଢ଼ାଟିଏ ସେଇଆଡ଼କୁ ଆସୁଛି । ତା' ମୁଣ୍ଡରେ ବଢ଼େଇ କାମର ହାତହତିଆରର ଏକ ପୁଟୁଳି ଥିଲା । ସିଂହକୁ ଦେଖିବା ମାତ୍ରେହିଁ ସେ ତା'ର ମୁଣ୍ଡ ଉପରୁ ସେ ଥଳୀଟି କାଢ଼ି ସିଂହକୁ ସାଷ୍ଟାଙ୍ଗ ପ୍ରଣିପାତ କରି କହିଲା, "ମହାରାଜଙ୍କର ଜୟ ହେଉ, ମହାରାଜ ହଜାର ବର୍ଷ ବଞ୍ଚି ରହନ୍ତୁ ।" ବୁଢ଼ାକୁ ଦେଖି ସିଂହ ଭାବିଲା ଏ ମଧ୍ୟ ଗୋଟିଏ ଜନ୍ତୁ ଓ ତାହାର ଲେଳିତ ଚର୍ମ ଦେଖି ହସି ପକାଇ କହିଲା, "ତମେ କିଏ? ତମେ ବି କ'ଣ ମଣିଷକୁ ଡରି ପଳଉଛ?"

ବଢ଼େଇକୁ ଦେଖିବା ମାତ୍ରେହିଁ ବତକଟି ବେହୋସ୍ ହୋଇଗଲା । ସେଥିପାଇଁ ସେ ସିଂହକୁ କହି ମଧ୍ୟ ପାରିଲାନାହିଁ ଯେ ସେହିଁ ମଣିଷ । ବଢ଼େଇ କହିଲା, "ମହାରାଜ ମୁଁ ଜଣେ ବଢ଼େଇ । ଆପଣଙ୍କ ମନ୍ତ୍ରୀ ଚିତାବାଘର ଘରଟିଏ ତୋଳିଦେବାକୁ ମୁଁ ଯାଉଛି ।"

"ଆରେ ତମେ ରଜା ପାଇଁ ଘର ନ କରି ମନ୍ତ୍ରୀ ପାଇଁ କରିବାକୁ ଯାଉଛ? ପ୍ରଥମେ ମୋ ପାଇଁହିଁ ଘରଟିଏ କରିଦିଅ?" ସିଂହ କହିଲା ।

"ପ୍ରଥମେ ଚିତାର ଘର ସରିଲେ ପରେ ଆପଣଙ୍କର ହେବ ।" ବୁଢ଼ା କହିଲା ।

"ଆରେ ବଢ଼େଇ ଜାତିର ପଶୁ, ଜାଣିଛ ମୁଁ କିଏ?" ଏକଥା କହି ପାଦରେ ବୁଢ଼ାକୁ ଥାପଡ଼ଟିଏ ଦେଲା । ସେଥିରେ ବୁଢ଼ାର ହାତହତିଆର ତଳେ ପଡ଼ିଗଲା । ବୁଢ଼ା କହିଲା, "ହଜୁର ଆପଣଙ୍କ ଆଦେଶ ଶିରୋଧାର୍ଯ୍ୟ ।" ଏକଥା କହି ସେ ସିଂହ ପାଇଁ ପିଞ୍ଜରାଟିଏ ତିଆରି କଲା ଓ କହିଲା, "ଭିତରକୁ ଯାଇ ଦେଖନ୍ତୁ କିମିତି ଘର?" ସିଂହଟି ପିଞ୍ଜରାରେ ପଶିବା ମାତ୍ରେ ସେ ଦରଜା ବନ୍ଦ କରିଦେଲା । "ଆରେ ବଢ଼େଇ, ତମେ ଏ କ'ଣ କରୁଛ?" ସିଂହ ପଚାରିଲା । "ମୁଁ ହିଁ ମଣିଷ । ମତେ ଦେଖି ତମେ ଦୂରେଇ ଯିବା ଉଚିତ୍ ଥିଲା ।"

ଏକଥା କହି ସେ ଅଟ୍ଟହାସ କରି ଉଠିଲା ।






# ବିଷ୍ଣୁ ପୁରାଣ

ବଳୀ ପାତାଳପୁରରେ ସମ୍ରାଟ ହୋଇ ରହିଲେ ଏବଂ ବାମନରୂପୀ ବିଷ୍ଣୁ ଭକ୍ତପ୍ରେମରେ ବାନ୍ଧିହୋଇ ରହିଲେ ବଳୀଙ୍କର ଦ୍ୱାରପାଳ ହୋଇ । ତେଣୁ ସବୁଦିନେ ବଳୀ ବିଷ୍ଣୁଙ୍କର ଚରଣ ପୂଜା କରିବାର ସୁଯୋଗ ପାଇଲେ । ସେହି ପୁଣ୍ୟ ଯୋଗୁ ସାରା ସ୍ୱର୍ଗମଣ୍ଡଳ ତଥା ମର୍ତ୍ତ୍ୟମଣ୍ଡଳ ମଧ୍ୟ ତାଙ୍କର ଅଧିକାରରେ ରହିଲା । ଅନେକ ଯୁଗ ପରେ ଥରେ ରାବଣ ଦିଗ୍‌ବିଜୟ କରିବାକୁ ପାତାଳପୁରକୁ ଯାଇଥିଲା । କିନ୍ତୁ ସେଠାରେ ଥିବା ଦ୍ୱାରପାଳ ବାମନଙ୍କ ନଖର ଆଘାତରେ ସେ ଅନେକ ଯୋଜନରେ ଯାଇ ପଡ଼ିଲା ଓ ଆଉ କେବେ ପାତାଳକୁ ଯିବାକୁ ମନ କରିନାହିଁ ।

ବଳୀ ସ୍ୱର୍ଗ ଓ ମର୍ତ୍ତ୍ୟ ଅଦୃଶ୍ୟ ଭାବରେ ବୁଲି ଦେଖୁଥିଲେ । ମର୍ତ୍ତ୍ୟରେ ଯେଉଁଠି ବର୍ଷା ନଥାଏ, ବା ଦୁର୍ଭିକ୍ଷ ପଡ଼ିଥାଏ ବା ଅଗ୍ନି ଉତ୍ପାତ ହେଉଥାଏ ସେସବୁ ସ୍ଥାନରେ ସେ ନିଜ ଶକ୍ତିବଳରେ ମର୍ତ୍ତ୍ୟବାସୀଙ୍କୁ ସେସବୁ ପ୍ରାକୃତିକ ବିପର୍ଯ୍ୟୟରୁ ରକ୍ଷା କରୁଥା'ନ୍ତି । ସେଥିପାଇଁ ମର୍ତ୍ତ୍ୟବାସୀମାନେ ଶୁଭେଚ୍ଛୁ ବଳୀଙ୍କୁ ସ୍ୱାଗତ କରିବା ପାଇଁ ପ୍ରତିବର୍ଷ ଦୀପାବଳୀ ପାଳନ କରନ୍ତି । ପୁଣି ତ୍ରିବିକ୍ରମ ବାମନଙ୍କର ଆକାଶରେ ପାଦ ଦେବା ଘଟଣାକୁ ମନେ କରିବା ପାଇଁ କାର୍ତ୍ତିକ ମାସରେ ଆକାଶ ଦୀପ ଜଳାହୁଏ ।

ଦକ୍ଷିଣ ମହାସମୁଦ୍ରରେ ଚକ୍ରବର୍ତ୍ତୀ ବଳୀ ପାତାଳରୁ ପୃଥିବୀରେ ପହଞ୍ଚିବା ପାଇଁ ଯେଉଁ

## ୭. ଦତ୍ତାତ୍ରେୟଙ୍କ କାହାଣୀ



ଦ୍ୱୀପ ସୃଷ୍ଟି ହୋଇଥିଲା, କୁହାଯାଏ ତାକୁହିଁ ବାଲିଦ୍ୱୀପ କୁହନ୍ତି । ତା' ଛଡ଼ା ବଳୀଙ୍କର ବଂଶଜମାନେ ତାଙ୍କ ନାମରେହିଁ ମହାବଳୀ-ପୁରମ୍ ନଗରୀ ନିର୍ମାଣ କରିଥିଲେ । ସେଥିରେ ସେମାନେ ଗଢ଼ିଥିଲେ ଅନେକ ଶିଳ୍ପ ଓ ଚିତ୍ରକଳାରେ ପୂର୍ଣ୍ଣ ମନ୍ଦିର ସବୁ । ପୁଣି କାଞ୍ଚିପୁରମ୍‌ରେ ସ୍ଥାପନା କରିଥିଲେ ତ୍ରିବିକ୍ରମ ବାମନାବତାରଙ୍କର ମୂର୍ତ୍ତି ।

ବଳୀଙ୍କର ଶାସନକାଳରେ ଯେଉଁ କ୍ଷତ୍ରିୟ ରାଜାମାନେ ରାଜତ୍ୱ କରୁଥିଲେ ସେମାନଙ୍କ ମଧ୍ୟରେ କ୍ରମେ ଦେଖାଦେଲା ବିଶୃଙ୍ଖଳା ଓ ନୀତିହୀନତା । ପ୍ରଜାମାନଙ୍କ ଉପରେ ସେମାନେ ନାନା ଭାବରେ ଅତ୍ୟାଚାର କଲେ । ବଳୀ ପାତାଳପୁରରେ ରହିବାରୁ ସେମାନେ ଆଉ କାହାକୁ ଡରିଲେ ନାହିଁ । ପରସ୍ପର ମଧ୍ୟରେ ଯୁଦ୍ଧ ହେଲା । ରାଜ୍ୟମାନ ଖଣ୍ଡବିଖଣ୍ଡ ହେବାକୁ ଲାଗିଲା । ବହୁ ପ୍ରଜାଙ୍କର ପ୍ରାଣହାନୀ ଘଟିଲା । ଶତ୍ରୁର ପ୍ରାଦୁର୍ଭାବ ଗୃହଆଡ଼େ ଦେଖାଦେଲା । ନିରସ୍ତ୍ର ପ୍ରଜାପୀଡ଼ନ ଅଧିକରୁ ଅଧିକ ହେଲା । ଏପରି ଅବସ୍ଥା ଦେଖି ରାଜାମାନଙ୍କୁ ଶିକ୍ଷା ଦେବାକୁ ଭଗବାନ୍ ବିଷ୍ଣୁ ଦଶାବତାର ମଧ୍ୟରୁ ଷଷ୍ଠତମ ଅବତାର ପରଶୁରାମ ରୂପେ ଜନ୍ମ ନେଲେ । ସେ ଥର ଥର କରି ଏକୋଇଶ ଥର ପୃଥିବୀକୁ ନିକ୍ଷତ୍ରିୟ କଲେ । କ୍ଷତ୍ରିୟ ରାଜାମାନେ ତାଙ୍କ ନାମ ଶୁଣିଲେ ପଳାଉଥିଲେ ।

ସେ କାହିଁକି କ୍ଷତ୍ରିୟ ନିଧନ ଆରମ୍ଭ କଲେ ସେ ବିଷୟରେ ଏକ କାହାଣୀ ଅଛି । ସେ ଯୁଗରେ ଚକ୍ରଙ୍କର ଅବତାର ରୂପରେ ପୃଥିବୀରେ ଜଣେ ରାଜା ଥିଲେ ତାଙ୍କ ନାମ ଥିଲା କାର୍ତ୍ତବୀର୍ଯ୍ୟାର୍ଜୁନ ।

ଥରେ ଶ୍ରୀବିଷ୍ଣୁ ଯୋଗନିଦ୍ରାରେ ମଗ୍ନ ଥିଲେ । ସେଇ ଅବସରରେ ଶଙ୍ଖ ଓ ଚକ୍ର ଦୁହେଁ ଖୁବ୍ ଯୁକ୍ତିତର୍କ କଲେ । ଚକ୍ର କହିଲେ, "ସହସ୍ରକିରଣଧାରୀ ସୂର୍ଯ୍ୟଙ୍କର ତେଜ ନେଇ ବିଶ୍ୱକର୍ମା ମୋତେ ନିର୍ମାଣ କରିଛନ୍ତି । ସହସ୍ର କୋଣ ସହିତ ମୁଁ ଏତେ କ୍ଷୀପ୍ର ଗତିରେ ବୁଲେ ଓ ଏତେ ଶକ୍ତିଶାଳୀ ଯେ ସମସ୍ତ ବଡ଼ ବଡ଼ ଅସୁରଙ୍କୁ ମୁହିଁ ସଂହାର କରିଛି । ମୋତେ ଧାରଣ କରିଛନ୍ତି ବୋଲିହିଁ ବିଷ୍ଣୁଙ୍କ ନାମ



"ଚକ୍ରୀ"। ଆଉ ତୁମେ ତ କେବଳ ଧ୍ୱନି କରୁଥାଅ ଆଉ କଣ କାମ କରିଛ କେବେ?"

ଏକଥା ଶୁଣି ପାଞ୍ଚଜନ୍ୟ କ୍ରୋଧରେ କହିଲେ, "ହେ ଚକ୍ରପୁରୁଷ, ତୁମର ଏତେ ଗର୍ବ? ଦେଖ ତୁମେ ପୃଥିବୀରେ ଏକ ଗର୍ବୀରାଜା ହୋଇ ଜନ୍ମ ହେବ ଏବଂ ବିଷ୍ଣୁ କୁଠାରରେ ତୁମର ଶିରଚ୍ଛେଦନ କରିବେ।"

ଅଭିଶପ୍ତ ଚକ୍ର କାର୍ତ୍ତବୀର୍ଯ୍ୟାର୍ଜୁନ ରୂପରେ ଜନ୍ମ ନେଲେ। ସେ ଥିଲେ ଦତ୍ତାତ୍ରେୟଙ୍କର ଶିଷ୍ୟ। ଗୁରୁକୃପା ବଳରେ ସେ ଅଣିମା ଲଘିମା ଆଦି ସିଦ୍ଧି କରିଥିଲେ ଓ ନାନା ବିଦ୍ୟାରେ ଶକ୍ତିଶାଳୀ ଥିଲେ। ପ୍ରୟୋଜନ ହେଲେ ଆୟୁଧଧାରୀ ସହସ୍ର ହାତରେ ସେ ଯୁଦ୍ଧ କରୁଥିଲେ।

ଏ ପ୍ରସଙ୍ଗରେ ମୁନିମାନେ ସୂତ ମହର୍ଷିଙ୍କୁ କହିଲେ, "ମୁନିବର, ଆମେ ଶୁଣିଥିଲୁ ଯେ ଦତ୍ତାତ୍ରେୟ ବିଷ୍ଣୁଙ୍କ ଅବତାର, କିନ୍ତୁ କିପରି ଓ କାହିଁକି ସେ ଏଇ ନାମ ନେଲେ ଓ ଜନ୍ମ ହେଲେ ସେସବୁ ଆମେ ଜାଣିନାହୁଁ। ତେଣୁ ଦୟାକରି ଆପଣ ପ୍ରଥମେ ଦତ୍ତାତ୍ରେୟଙ୍କ କାହାଣୀ ଶୁଣାନ୍ତୁ।"

ସୂତ ମହର୍ଷି ଦତ୍ତାତ୍ରେୟଙ୍କ କାହାଣୀ କହିଲେ, "ମହର୍ଷି ଅତ୍ରି ଶ୍ରୀବିଷ୍ଣୁଙ୍କୁ ସ୍ମରଣ କରି ପୁତ୍ର କାମନାରେ ତପସ୍ୟା କରୁଥା'ନ୍ତି। ତାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ବିଷ୍ଣୁ, ବ୍ରହ୍ମା ଓ ଶିବଙ୍କ ସହିତ ତାଙ୍କ ସମ୍ମୁଖରେ ଆବିର୍ଭବ ହୋଇ କହିଲେ, "ଆମ ତିନି ଦେବତାଙ୍କ ଅଂଶରୁ ଆମେ ଦତ୍ତ କରି ଦେଉଛୁ। ସେଥିରୁ ଯେଉଁ ପୁତ୍ର ଜନ୍ମିବ ତୁମେ ତା'ର ନାମ ରଖିବ ଦତ୍ତାତ୍ରେୟ" ତା'ପରେ ସେମାନେ ଅଦୃଶ୍ୟ ହୋଇଗଲେ।

ସେହି ସମୟରେ ଅନେକ ଦୂରରେ ଆଶ୍ରମରେ ଥା'ନ୍ତି ଅତ୍ରିଙ୍କ ପତ୍ନୀ ଅନୁସୂୟା। ତାଙ୍କର ସତୀତ୍ୱ ଓ ସାଧନା ଯୋଗୁ ସେ ଖୁବ୍ ବିଖ୍ୟାତ ହୋଇଥା'ନ୍ତି। ଦିନେ ନାରଦ ତିନି ଦେବତାଙ୍କ ପତ୍ନୀଗଣ ଲକ୍ଷ୍ମୀ, ସାବିତ୍ରୀ ଓ ପାର୍ବତୀଙ୍କୁ ଦେଖାକରି ଅନୁସୂୟାଙ୍କ ସତୀତ୍ୱର ମାହାତ୍ମ୍ୟ ବର୍ଣ୍ଣନା କଲେ। ନାରଦ କହିଲେ



ସେ ଅନେକ ଅସାଧ୍ୟ କାର୍ଯ୍ୟ କରିଛନ୍ତି । ଦେବୀ ଗଙ୍ଗାଙ୍କ ଉପରେ ଉପଦ୍ରବ କରୁଥିବା ପିଶାଚମାନଙ୍କୁ ଅନୁସୂୟା ନିଜ ଶକ୍ତି ଦ୍ୱାରା ନିର୍ମୂଳ କରିଥିଲେ, ଲୁହାର ଚଣାକୁ ସିଝାଇ ପାରିଥିଲେ । ସତୀ ଅନୁସୂୟାଙ୍କର ସଖୀ ପରି ଥିଲେ ସତୀ ସୁମତି । ଥରେ ସେ ତାଙ୍କର ଅଥର୍ବ ସ୍ୱାମୀକୁ କାନ୍ଧରେ ବୋହି ବୋହି ଅନ୍ଧାରରେ ଯାଉଥିଲେ । ସେହିଦିନ ସେହି ବାଟ କଡ଼ରେହିଁ ଋଷି ଅଣୀମାଣ୍ଡବ୍ୟଙ୍କୁ ରାଜା ଗୋଟାଏ ଭୁଲ ବୁଝାମଣା ଯୋଗୁ ଶୂଳୀ ଦେଇଥିଲେ । ସେ ଶୂଳୀ ଉପରେ ବସି ଖୁବ୍ କଷ୍ଟ ସହ୍ୟ କରୁଥିଲେ । ଅନ୍ଧକାରରେ ସୁମତିଙ୍କ ସ୍ୱାମୀଙ୍କ ଦେହ ତାଙ୍କ ଦେହରେ ବାଜିବାରୁ ତାଙ୍କୁ ଅଧିକ କଷ୍ଟ ହେଲା ଓ ସେ ଅଭିଶାପ ଦେଲେ କି ଏପରି ଯନ୍ତ୍ରଣାଦାୟକ ପରିସ୍ଥିତିରେ ତାଙ୍କ କଷ୍ଟକୁ ଯିଏ ବଢ଼ାଇଛି ସେ ସୂର୍ଯ୍ୟୋଦୟ ପୂର୍ବରୁ ମରିଯିବ । ସୁମତି ଥିଲେ ବଡ଼ ସତୀ । ସେ ସ୍ୱାମୀଙ୍କୁ ବଞ୍ଚାଇବାକୁ ଯାଇ ସୂର୍ଯ୍ୟୋଦୟ ବନ୍ଦ କରି ଦେଲେ । ସୂର୍ଯ୍ୟଙ୍କ ବିନା ସଂସାର ଅଚଳ ରହିଲା ଘୋର ବିପଦ ଦେଖାଗଲା । ସେ କ୍ଷେତ୍ରରେ ମଧ୍ୟ ଅନୁସୂୟା ସୁମତିଙ୍କୁ ଅନୁରୋଧ କରି ସୂର୍ଯ୍ୟୋଦୟ କରାଇଲେ ଓ ତାଙ୍କ ସ୍ୱାମୀଙ୍କୁ ମଧ୍ୟ ବଞ୍ଚାଇଲେ ।

ଅନୁସୂୟାଙ୍କର ଆଶ୍ଚର୍ଯ୍ୟ କର୍ମ ସବୁ ଶୁଣି ଦେବୀମାନେ ତାଙ୍କୁ ପରୀକ୍ଷା କରିବା ପାଇଁ ନିଜ ନିଜର ସ୍ୱାମୀମାନଙ୍କୁ କହିଲେ । ପତ୍ନୀମାନଙ୍କ ଅନୁରୋଧରେ ବ୍ରହ୍ମା, ବିଷ୍ଣୁ ଓ ଶିବ ତିନିଜଣ ତପସ୍ୱୀଙ୍କ ବେଶଧରି ଅନୁସୂୟାଙ୍କ ଆଶ୍ରମରେ ପହଞ୍ଚିଲେ । ଅନୁସୂୟା ପାଦ୍ୟ ଅର୍ଘ୍ୟ ଦେଇ ତିନିଜଣଙ୍କୁ ସ୍ୱାଗତ କଲେ ଓ ସେଠାରେ ଖାଇବା ପାଇଁ ଅନୁରୋଧ କଲେ । ସେତେବେଳେ ଅତ୍ରି ମୁନି ତପସ୍ୟା କରିବା ପାଇଁ ଦୂରକୁ ଚାଲି ଯାଇଥା'ନ୍ତି । ଅନୁସୂୟାଙ୍କ ଅନୁରୋଧରେ ତିନି ତପସ୍ୱୀ କହିଲେ, "ଆମେ ଏଠାରେ ଭିକ୍ଷାନ୍ନ ଗ୍ରହଣ କରିବୁ ଯେ କିନ୍ତୁ ଏକ ସର୍ତ୍ତ ଅଛି । ତମେ ଯଦି ଦେହରୁ ଲୁଗା କାଢ଼ି ଦେଇ ଆମକୁ ଖୁଆଇବ ତେବେ ଯାଇ ଆମେ ଖାଇବୁ ।"



"ଓ ଏପରି କଥା ? ଠିକ୍ ଅଛି ।" ଅନୁସୂୟା କହିଲେ ଓ ଅଳ୍ପ ଚିନ୍ତା କରି ହୃଦୟରେ ଭଗବାନ୍‌ଙ୍କୁ ଧ୍ୟାନ କରି କହିଲେ, "ମୋର ଯଦି ପ୍ରକୃତରେ ସତୀତ୍ୱ ଥିବ ତେବେ ଏଇ ତିନିଜଣ ତପସ୍ୱୀ ତିନୋଟି ଶିଶୁ ହୋଇଯିବେ ।" ଅନୁସୂୟା ଆଖି ଖୋଲି ଦେଖିଲେ ତିନୋଟି କୁନି କୁନି ଛୁଆ ହାତ ଗୋଡ଼ ହଲାଇ ଖେଳୁଛନ୍ତି । ସେ ଛୁଆମାନଙ୍କୁ ଦେଖି ଅତି ଆନନ୍ଦିତ ହୋଇ ସେମାନଙ୍କୁ କୋଳରେ ଧରି ଶୁଆଇ ଦେଲେ । ବାତ୍ସଲ୍ୟ ଭାବରେ ସେ ମଗ୍ନ ଥିଲେ । ଦେହରେ ତାଙ୍କର ଲଜ୍ଜା ନଥିଲା । ଆଉ ସେ ସେମାନଙ୍କୁ ଖୁଆଇ ସାରି ନାନା ବାତ୍ସଲ୍ୟ ଗୀତ ଗାଇ ଦୋଳି କରି ଶୁଆଇ ଦେଲେ । ଅତିଥି ସତ୍କାର ହେଲା ଏକ ଅଭିନବ ରୂପରେ ।

ସେତିକିବେଳେ କେଉଁଠାରୁ ଏକ ସୁନ୍ଦର ଧଳା ଷଣ୍ଢଟିଏ ଆସି ଦ୍ୱାର ପାଖରେ ଠିଆ ହୋଇ ତା'ର ପାଦରେ ଲାଗିଥିବା ଘୁଙ୍ଗୁରର ଶବ୍ଦ କଲା । ଏକ ବିଶାଳ ପକ୍ଷୀ ଆଶ୍ରମ ଗୃହପାଖରେ ଉଡ଼ିବାକୁ ଲାଗିଲା । ଆହୁରି ଏକ ରାଜହଂସ ଚଞ୍ଚୁରେ ଏକ ବିକଶିତ ପଦ୍ମ ଧରି ଉଡ଼ିଆସି ଆଶ୍ରମରେହିଁ ଓହ୍ଲାଇଲା । ରାଜହଂସ ଘର ଭିତରକୁ ଭିଙ୍କିମାରି ଦେଖିଲା । ତା' ପଛରେ ସୁନ୍ଦର ନାଗସାପଟିଏ ମଧ୍ୟ ବୁଲୁଥିବାର ଦେଖାଗଲା । ତା'ପରେ ପହଞ୍ଚିଲେ ନାରଦ । ହାତରେ ମହତୀବୀଣାରେ ସେ ନୀଳାମ୍ବରୀ ରାଗର ଆଳାପ କରୁଥା'ନ୍ତି । ଆଉ ତାଙ୍କ ସହିତ ଥିଲେ ତିନିଦେବୀ ।

ନାରଦ ଅନୁସୂୟାଙ୍କୁ କହିଲେ, "ମା', ଦେବୀମାନେ ଆପଣଙ୍କ ଦ୍ୱାରରେ ରହିଛନ୍ତି । ବାହନମାନଙ୍କୁ ଦେଖି ସେମାନେ ଏଠାରେ ଆସି ପହଞ୍ଚିଛନ୍ତି । ବାହନମାନେ ନିଜ ନିଜ ଦେବତାମାନଙ୍କୁ ଓ ଦେବୀମାନେ ସ୍ୱାମୀମାନଙ୍କୁ ନପାଇ ବ୍ୟସ୍ତ ହେଲେଣି, ଆପଣ ଦୟାକରି ସେମାନଙ୍କୁ ଫେରାଇ ଦିଅନ୍ତୁ ।"

ଅନୁସୂୟା ବିନୟପୂର୍ବକ ତିନି ଦେବୀଙ୍କୁ ପ୍ରଣାମ କରି କହିଲେ, "ମା'ମାନେ, ସେଇ ତିନୋଟି ଝୁଲରେ ଆପଣଙ୍କ ସ୍ୱାମୀମାନେ ଶିଶୁରୂପରେ ଶୋଇଛନ୍ତି । ନେଇଯା'ନ୍ତୁ ।"

ଝୁଲ ପାଖକୁ ଯାଇ ଦେବୀମାନେ ପରସ୍ପର ମୁହଁ ଗୁହାଁଗୁହିଁ ହେଉଛନ୍ତି । କାରଣ ସେମାନେ ନିଜ ନିଜ ସ୍ୱାମୀଙ୍କୁ ଚିହ୍ନିବାର କୌଣସି ଉପାୟ ନଥିଲା । ନାରଦ କହିଲେ, "ଏ କି ଲଜ୍ଜାର କଥା, ନିଜ ସ୍ୱାମୀମାନଙ୍କୁ ଆପଣ ଚିହ୍ନିପାରୁ ନାହାନ୍ତି । ଶିଘ୍ର ଉଠାଇ ନିଅନ୍ତୁ ।" ଦେବୀମାନେ ସବୁ ଶିଶୁମାନଙ୍କୁ ଉଠାଇ ନେଲେ ହେଲେ ସବୁ ଭୁଲ୍ ଭାବରେ ନେଲେ । ଦେଖିବା ବେଳକୁ ଲକ୍ଷ୍ମୀ ବ୍ରହ୍ମାଙ୍କୁ ଧରିଛନ୍ତି ତ ପାର୍ବତୀ ବିଷ୍ଣୁଙ୍କୁ ଧରିଛନ୍ତି ସାବିନୀ ଶିବଙ୍କୁ ଧରିଛନ୍ତି । ସମସ୍ତେ ତ ଏକପ୍ରକାର, ସମସ୍ତେ ଶିଶୁ । ନାରଦ ଏସବୁ ଦେଖି ଖୁବ୍ ହସୁଥା'ନ୍ତି । ସେଥିପାଇଁ ସେମାନେ ଅତ୍ୟନ୍ତ ଲଜ୍ଜିତ ହେଲେ ।

ପରେ ଅନୁସୂୟାଙ୍କ ପ୍ରାର୍ଥନାରେ ତିନିଜଣ ନିଜ ନିଜ ରୂପ ଧରିଲେ । ସେତେବେଳେ ଅତ୍ରିମୁନି ମଧ୍ୟ ସେଠାରେ ଆସି ପହଞ୍ଚିଲେ ଓ ତିନି ଦେବତାଙ୍କୁ ପ୍ରଣାମ କଲେ । ତିନି ଦେବତା ଗୋଟିଏ ଦେହ ଧାରଣ କରି ଦତ୍ତାତ୍ରେୟ ରୂପରେ ଦେଖାଦେଲେ । ନାରଦ ତାଙ୍କ ବୀଣାଟି ସୁନ୍ଦର ଭାବରେ ବଜାଇ ଦତ୍ତାତ୍ରେୟଙ୍କର ସ୍ତୁତି କଲେ । କିଛିଦିନ ପରେ ସେ ଅନୁସୂୟାଙ୍କର ପୁତ୍ର ରୂପରେ ଜନ୍ମ ନେଲେ । ଶିବଙ୍କ ବାହନ ନନ୍ଦୀ ସର୍ବଦା ତାଙ୍କ ପଛରେ ବାଛୁରି ରୂପରେ ବୁଲୁଥା'ନ୍ତି । ଚାରିବେଦ ଚାରୋଟି କୁକୁର ରୂପରେ ତାଙ୍କ



ପାଖରେ ଥା'ନ୍ତି । ସର୍ପ, ହଂସ ଓ ଗରୁଡ଼ ସର୍ବଦା ତାଙ୍କ ଚତୁର୍ପାର୍ଶ୍ୱରେ ବିଚରଣ କରୁଥା'ନ୍ତି । ତପସ୍ୟାରତ ଦତ୍ତାତ୍ରେୟ କ୍ରମେ ସମସ୍ତ ପ୍ରକାର ସିଦ୍ଧି ଓ ଦିବ୍ୟଶକ୍ତି ସବୁ ଅଳ୍ପରେ ଲାଭ କଲେ । ସେହି ଦତ୍ତାତ୍ରେୟଙ୍କୁ ମୁନିଋଷି, ସିଦ୍ଧ ଓ ଜ୍ଞାନୀମାନେ ସର୍ବଦା ଆରାଧନା କରିବାକୁ ଲାଗିଲେ । କାର୍ତ୍ତବୀର୍ଯ୍ୟାର୍ଜୁନ ମଧ୍ୟ ତାଙ୍କୁ ପୂଜାକରି ଶକ୍ତିମାନ ହୋଇ ଦିଗ୍‌ବିଜୟ କଲେ । ଅନେକ ରାଜ୍ୟ ଜୟ କରି ଚକ୍ରବର୍ତ୍ତୀ ବୋଲାଇଲେ ।

ଏଣେ ଜମଦଗ୍ନିଙ୍କ ଆଶ୍ରମରେ ତାଙ୍କର ଭୃଗୀୟ ପୁତ୍ର ରୂପେ ଜନ୍ମ ନେଲେ ପରଶୁରାମ । ତାଙ୍କର ନାମ ଥିଲା ରାମ; କିନ୍ତୁ ସର୍ବଦା

ପରଶୁ ବା କୁଠାରଟିଏ ଧରି ସେ ଜଙ୍ଗଲ କାଟି ଜନପଦ ନିର୍ମାଣ କରୁଥିବାରୁ ତାଙ୍କର ନାମ ହେଲା ପରଶୁରାମ । ସେ ହିମାଳୟରେ ତପସ୍ୟା କରି ଶିବଙ୍କୁ ପ୍ରସନ୍ନ କରି ବହୁ ଅସ୍ତ୍ରଶସ୍ତ୍ର ଲାଭ କରିଥିଲେ । ଭୃଗୁବଂଶରେ ଜାତ ବୋଲି ତାଙ୍କର ଅନ୍ୟ ନାମ ଭାର୍ଗବରାମ ।

ଥରେ ପର୍ଶୁରାମଙ୍କ ମା' ରେଣୁକାଦେବୀ ସ୍ନାନ କରିବାକୁ ଯାଇ ଫେରିବାକୁ ଡେରି କଲେ । ଜମଦଗ୍ନି ଜାଣିବାକୁ ଚାହିଁଲେ କାରଣ କ'ଣ । ସେ ସୂକ୍ଷ୍ମଦୃଷ୍ଟିରେ ଦେଖି-ପାରିଲେ ଯେ ଆକାଶରେ ଉଡିଯାଉଥିବା ଏକ ଗନ୍ଧର୍ବଙ୍କୁ ଦେଖୁ ଦେଖୁ ତାଙ୍କର ଏତେ ଡେରି ହେଉଛି । ଜମଦଗ୍ନି କ୍ରୋଧରେ ଫାଟି ପଡିଲେ ଓ ବଡ଼ ପୁଅକୁ ଆଦେଶ ଦେଲେ ମା'କୁ ହାଣି ଦେବାକୁ ।

ବଡ଼ ଦୁଇପୁଅ ଶୁଣିଲେ ନାହିଁ । କିନ୍ତୁ ପର୍ଶୁରାମ ନିଜ ମା'ଙ୍କୁ ହାଣି ଦେଲେ । ଜମଦଗ୍ନି ଖୁସି ହୋଇ ପୁଅକୁ ବର ମାଗିବାକୁ କୁହନ୍ତେ ସେ ବର ମାଗିଲେ ମା'କୁ ବଞ୍ଚାଇ ଦେବାକୁ । ରେଣୁକା ଦେବୀ ପୁନର୍ଜୀବିତା ହେଲେ ।

କାର୍ତ୍ତବୀର୍ଯ୍ୟାର୍ଜୁନ ଦିଗ୍‌ବିଜୟ ଶେଷ କରି ନିଜର ରାଜଧାନୀ ମାହେଷ୍ମତୀ ନଗରୀକୁ ଫେରୁଥା'ନ୍ତି । ସେତେବେଳେ ବନ ମଧ୍ୟରେ ଜମଦଗ୍ନିଙ୍କ ଆଶ୍ରମ ଦେଖି ସେହିଠାରେ ବିଶ୍ରାମ କଲେ । ଜମଦଗ୍ନି ତାଙ୍କ ନିକଟରେ ଥିବା କାମଧେନୁଙ୍କ ଅଂଶରେ ଜାତ ହୋମଧେନୁଙ୍କ ସାହାଯ୍ୟରେ ରାଜାଙ୍କୁ ତାଙ୍କର ପାରିଷଦବର୍ଗ ଓ ସୈନ୍ୟମାନଙ୍କ ସହିତ ଅତିଥିସତ୍କାର କଲେ । ଏତେ ଲୋକଙ୍କୁ କିପରି ଜଣେ ଋଷି ଖାଇବାକୁ ଦେଲେ ସମସ୍ତଙ୍କୁ ଖୁବ୍ ଆଶ୍ଚର୍ଯ୍ୟ ଲାଗିଲା । ତା'ପରେ ରାଜା ହୋମଧେନୁଙ୍କର ସନ୍ଧାନ ପାଇଲେ । ସେ ଲୋଭରେ ପଡ଼ି ଗାଈଟିକୁ ଋଷିଙ୍କୁ ମାଗିଲେ । ସେ ନ ଦେବାରୁ ବଳପୂର୍ବକ ହରଣ କରିନେଇ ନିଜ ରାଜ୍ୟକୁ ଫେରିଗଲେ ।






ଗୋଟାଏ ମୁଲକରେ ଜଣେ ଯାଦୁକରଣୀ ରହୁଥାଏ । ତା' ନାମ ପଡ଼ିଲେ ସମସ୍ତେ ଡର ଯାଉଥାନ୍ତି । ସେ କୁଆଡ଼େ କୁକୁରକୁ ଛେଳି କରିଦେଇ ପାରୁଥାଏ ଓ ମଣିଷଙ୍କୁ ମଧ୍ୟ ଗଛ ବନାଇ ଦେଉଥାଏ । ଆହୁରି, ସେହି ଗଛ କାଟି ସେ କାଠ ଜାଳି ସେ ଛେଳିକୁ ସେଇଥିରେ ସିଝାଇ ଖାଉଥାଏ ।

ସେ ଯାଦୁକରଣୀକୁ ସମସ୍ତେ କଙ୍କାଳଦେବୀ ବୋଲି ଡାକୁଥାନ୍ତି । ପାତାଳପୁରୀରେ ରାକ୍ଷସ-ମାନଙ୍କର ଗୋଟାଏ ଅଞ୍ଚଳ ଅଛି । କଙ୍କାଳ-ଦେବୀ କଥା ସେ ଅଞ୍ଚଳରେ ପ୍ରଚାର ହୋଇଗଲା । ଗୋଟାଏ ରାକ୍ଷସ ଭାବିଲା, ଯଦି ସେ କଙ୍କାଳଦେବୀକୁ ପାତାଳପୁରୀ ଭିତରକୁ ନେଇଆସି ପାରିବ, ତେବେ ତାକୁ ସମସ୍ତେ ବାହାଦୁର୍ ବୋଲି କହିବେ ।

ଆଉ ସେ କଙ୍କାଳଦେବୀ ଦ୍ୱାରା ତା'ର ଅନେକ କାର୍ଯ୍ୟ ସାଧିତ ହେବ । ତା' ଯୋଗୁ ସେ ଅନେକ ଦୁର୍ଦ୍ଦାନ୍ତ ମଣିଷଙ୍କୁ ଗଛ ବନାଇ ଦେଇ ପାରିବ ଓ ଅନେକ କୁକୁରଙ୍କୁ ଛେଳି ବନାଇ ଖାଇ ପାରିବ । ଏଇପରି ଅନେକ ଚିନ୍ତା କରି କଙ୍କାଳ-ଦେବୀକୁ କୌଣସି ମତେ ଭୁଲାଇ ଆଣିବାର ଉପାୟ ପାଞ୍ଚିଲା ।

ସେ ଗୋଟାଏ ସୁନ୍ଦର ଯୁବକ ବନିଯାଇ କଙ୍କାଳଦେବୀ ଘରେ ପହଞ୍ଚିଲା ଓ କହିଲା, "କଙ୍କାଳଦେବୀ! ତମକୁ କୁଆଡ଼େ ବହୁତ ଅଦ୍ଭୁତ କାମ କରିଆସେ ବୋଲି ଲୋକେ କହନ୍ତି । କିନ୍ତୁ ମୁଁ ବାସ୍ତବିକ ସେସବୁ କିଛି ଶୁଣି ନାହିଁ । ମୁଁ ତୁମ ରୂପରେ ମୁଗ୍ଧ ହୋଇ ଆସିଛି । ମୋତେ ବାହା ହେବାକୁ ତମର ଆପତ୍ତି ଅଛି?"

ଜହ୍ନମାମୁଁ




କଙ୍କାଳଦେବୀ ତା' ପାଲୁଆ ପାଖରେ ଖିଲ ଖିଲ ହସି ଉଠିଲା ଓ ପରିହାସ କରି କହିଲା, "ତମେ ତ ପାତାଳପୁରୀର ବାସିନ୍ଦା । ମୋତେ ସେଠାକୁ ନେବ କିପରି ?"

"ଏଇ କଥା ? ମୋ ପିଠିରେ ବସିଯାଅ । ମୁଁ ନେଇଯିବି ।" ରାକ୍ଷସ କହିଲା ।

କଙ୍କାଳଦେବୀ ତା' ପିଠିରେ ଚଢ଼ି ବସିଲା । ରାକ୍ଷସ ପାଦେ ଦୁଇପାଦ ଯାଇ ଏମିତି ଭୀଷଣ ଭାବରେ ମାଟିରେ ଗୋଡ଼ ଠୁକିଲା ଯେ ପାତାଳକୁ ଦ୍ୱାର ଖୋଲିଗଲା । କିନ୍ତୁ ସେ ଯେତେ ବାଟ ଯାଉଥାଏ, ତା' ଅଞ୍ଚଳରେ ପହଞ୍ଚି ପାରୁ ନଥାଏ । ଏଣେ ଯେତେ କହିଲେ ବି କଙ୍କାଳଦେବୀ ତା' ପିଠିରୁ ଓହ୍ଲାଇବାକୁ ନାରାଜ । ସେ ଖାଲି ଅଟ୍ଟହାସ୍ୟ କରୁଥାଏ । ରାକ୍ଷସ ମହା ବିପଦରେ ପଡ଼ିଲା । ଏବେ ମନେ ମନେ ଖୁସି ହୋଇ ଯାଇଥିଲା ଯେ କଙ୍କାଳଦେବୀକୁ ନେଇ ବହୁତ ଢଙ୍ଗରୁ ଲାଭବାନ୍ ହେବ । କିନ୍ତୁ ଏବେ ଉପସ୍ଥିତ ବିପଦରୁ କିପରି ରକ୍ଷା ପାଇବ ସେହି ଚିନ୍ତା । ଚିନ୍ତା କରି ଯାଉ ଯାଉ ବାଟରେ ଦେଖିଲା ଜଣେ ରାକ୍ଷସ ଦୂରରୁ ଆସୁଛି । ତା' ମନରେ ଟିକିଏ ଆଶା ଦେଖାଦେଲା । ବ୍ରହ୍ମରାକ୍ଷସକୁ ପାଖରେ ଦେଖି ସେ ସବୁ କହି ତା' ପରାମର୍ଶ ଲୋଡ଼ିବାରୁ ବ୍ରହ୍ମରାକ୍ଷସ କହିଲା, "ତୁ ରାକ୍ଷସ କୁଳର କଳଙ୍କ । ତୋର ସାହସ ନାହିଁ କି ବୁଦ୍ଧି ନାହିଁ । ଯା, ଯେଉଁଠାରୁ ଏ ଯାଦୁକରଣୀକୁ ଆଣିଛୁ, ସେଇଠାରେ ନେଇ ଏହାକୁ ଛାଡ଼ି ଦେ ।"

ରାକ୍ଷସ ସେଉଠୁ ବୁଲିପଡ଼ି ପୁଣି ଭୂପୃଷ୍ଠକୁ ବାହାରି ଆସିଲା । ବାଟରେ ସେ ଜଣେ ଶଗଡ଼ିଆକୁ ଭେଟିଲା । ଶଗଡ଼ିଆ ଥଟ୍ଟାଳିଆ ଭାବରେ ପଚାରିଲା, "କହୋ, ଏ ବୋଝ କେବେଠୁଁ ବୋହୁଛ ?"

ରାକ୍ଷସ ବଡ଼ ବିଷର୍ଣ୍ଣ ଭାବରେ ଶଗଡ଼ିଆକୁ ନିଜ ଦୁଃଖ କହିଲା । ଶଗଡ଼ିଆ କହିଲା, "ହଉ । ତମେ ଏହାକୁ ମୋ ପିଠିରେ ବସାଇ ଦିଅ ।"

ରାକ୍ଷସ ସେଇଆ କଲା । ଶଗଡ଼ିଆ ଗାଡ଼ି ଧରି ଚାଲିଗଲା । ରାକ୍ଷସ ଭାବିଲା, "ଅଳ୍ପ

ସମସ୍ତ ପରେ ଯେତେବେଳେ ଶଗଡ଼ିଆ ବୋଝ ଯୋଗୁଁ କ୍ଳାନ୍ତ ହେବ, ସେ ଫେରି ଆସି ମୋତେ ଧରିବ। ବରଂ ତା' ପୂର୍ବରୁ ମୁଁ ପଳାଇଯାଏଁ!"

ଏହା କହି ସେ କେଇପାଦ ଅଗ୍ରସର ହେଲା, ପଛରୁ ତାକୁ କିଏ ଡାକିଲା, "ହେ ବାବୁ!"

ରାକ୍ଷସ ଦୌଡ଼ିବାକୁ ସ୍ଥିର କଲା। କାରଣ ସେ ଶଗଡ଼ିଆର କଣ୍ଠସ୍ୱର ବାରି ପାରିଲା। କିନ୍ତୁ ଥରେ ପଛକୁ ଅନାଇ ସେ ଦେଖିଲା, ଶଗଡ଼ିଆ କାନ୍ଧରେ କାହିଁ କମ୍ବଳ ଦେଖା ନାହିଁ!

ସେ ରହିଗଲା ଓ ଶଗଡ଼ିଆ ପାଖକୁ ଆସିବାରୁ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ତମେ ତା'କୁ କ'ଣ କଲ?"

"ଆରେ ବାବୁ, ଏପରି ଏକ ସ୍ଥାନର ମୁଁ ସନ୍ଧାନ ଜାଣିଥିଲି, ଯାହା ଭିତରେ ପଡ଼ିଲେ କେହି ବାହାରି ଆସି ପାରେ ନାହିଁ। ସେହି ପୁରୁଣା କୂଅ ଭିତରକୁ କଙ୍କାଳଦେବାକୁ ଠେଲି ପକାଇଦେଲି। ସେ ମୋ କମ୍ବଳ ଜାବୁଡ଼ି ଧରିଥାଏ। ମୁଁ କମ୍ବଳ ସହ ତାକୁ ପକାଇ ଦେଲି। ଆଉ ଯିବ କୁଆଡ଼େ?" ଶଗଡ଼ିଆ ଉତ୍ତର ଦେଲା।

ରାକ୍ଷସ ଏଡ଼େ ଖୁସି ହୋଇଗଲା ଯେ ସେ କହିଲା, "ଭାଇ, ତମ କମ୍ବଳ ବାବଦରେ ତମକୁ ମୁଁ ରାଜା କରିଦେବି। ତମେ ମାସେ ଛାଡ଼ ରାଜଧାନୀକୁ ଯିବ। ଶୁଣିବ, ମାସେ




ହେଲା ରାଜକନ୍ୟା ଅନ୍ଧ ଓ ମୂକ ହୋଇ ଯାଇଛନ୍ତି। କେହି ତାଙ୍କୁ ଭଲ କରିପାରୁ ନାହାନ୍ତି। ଅସଲ କଥା ହେଲା, ମୁଁ ତାଙ୍କ ଭିତରେ ପଶି ତାଙ୍କୁ କଲବଲ କରିବ। ମୋର ସେଥିରେ ଆନନ୍ଦ। ତମେ ରାଜକୁମାରୀଙ୍କ କାନ ପାଖରେ କହିବ କି ତମେ ଶଗଡ଼ିଆ। ମୁଁ ତାଙ୍କୁ ଛାଡ଼ିଦେବି। ଦେଖିବ ତମକୁ ରାଜା କେଡ଼େ ଆଦର କରିବେ, ବୁଝି ପାରୁଥିବ। ଖବରଦାର୍, ଦ୍ୱିତୀୟଥର ଆଉ କାହା ଘରେ କେବେ ଏ ମନ୍ତ୍ର ଉଚ୍ଚାରଣ କରିବ ନାହିଁ!"

ଶଗଡ଼ିଆ ମାସକ ପରେ ରାଜଧାନୀରେ ପହଞ୍ଚି ଶୁଣିଲା ବାସ୍ତବିକ ରାଜକୁମାରୀ ଏକ



ଅଦ୍ଭୁତ ପ୍ରକାର ବେମାରରେ ପଡ଼ିଛନ୍ତି । କେତେବେଳେ ହସୁଛନ୍ତି ତ କେତେବେଳେ କାନ୍ଦୁଛନ୍ତି । ନଖାଇ ନପିଇ ତାଙ୍କର କଣ୍ଠା ଦୋହଲିଲଣି । ରାଜାଙ୍କର ଏକମାତ୍ର କନ୍ୟା ଯୋଗୁ ରାଜା ତଥା ରାଜ୍ୟର ପ୍ରଜାବର୍ଗ ସମସ୍ତେ ବହୁତ ଦୁଃଖିତ । ବଡ଼ ବଡ଼ ବୈଦ୍ୟ ଓ ଆୟୁର୍ବେଦାଚାର୍ଯ୍ୟମାନେ ବହୁ ଦେଶ ବିଦେଶରୁ ଆସି ହାରିଗଲେଣି । କୌଣସି ଔଷଧ କାଟୁ କରୁନାହିଁ । ଏପରି ଏକ ଦୁଃସମୟରେ ଭସି ଯାଉଥିବା ଲୋକ କୁଟାଖିଏ ଧରି ରହିବା ପରି ରାଜାଙ୍କ ଆଗରେ ଆସି ପହଞ୍ଚିଲା ଶଗଡ଼ିଆ ଓ ଅଗତ୍ୟା ରାଜା ତା' କଥାରେ ରାଜି ହେଲେ । କାରଣ ପ୍ରଥମରୁହିଁ ସେ ଦୃଢ଼ତାର ସହିତ କହିଲା ଭଲ କରିଦେବ ବୋଲି । ତା'ର କଥାର ଦୃଢ଼ତା ଯୋଗୁ ରାଜା ଟିକିଏ ଆଶାବାଦୀ ହୋଇ ଉଠିଲେ । ତେଣୁ ସେ କହିଲେ, "ପରୀକ୍ଷା କରି ଦେଖୁ ଯାହା ଭାଗ୍ୟରେ ଥିବ ।

ପ୍ରଥମେ ତା' କଥାରେ କେହି ପରତେ ଗଲେନାହିଁ । ତେବେ ସେତେବେଳକୁ ଅନ୍ୟ ସମସ୍ତେ ପଛଘୁଞ୍ଚା ଦେଇଥିବାରୁ ଶଗଡ଼ିଆକୁ ଗୋଟାଏ ସୁଯୋଗ ଦିଆଗଲା ।

ସେ ରାଜକୁମାରୀଙ୍କ କାନ ପାଖରେ କହିଲା, "ରାକ୍ଷସ ଭାଇ, ମୁଁ ଶଗଡ଼ିଆ!"

ଭିତରୁ ସେ ଶୁଣିଲା, "ବେଶ୍ । ମୁଁ ଯାଉଛି । ଖବର୍‌ଦାର୍, ଆଉ କେବେ କାହାକୁ ଏ ମନ୍ତ୍ର ଶୁଣାଇବ ନାହିଁ । ଶୁଣାଇଲେ ମରିବ ।"

ରାକ୍ଷସ ଅଦୃଶ୍ୟ ଭାବରେ ବାହାରିଗଲା । ରାଜକୁମାରୀ ଆଖି ଖୋଲିଲେ ଓ ହସିଲେ । ସମସ୍ତେ ବୁଝିପାରିଲେ କୌଣସି ଯାଦୁ-ବଳରେ ସେ ଭଲ ହୋଇ ଯାଇଛନ୍ତି । ରାଜାଙ୍କର ଆଉ କେହି ପୁଅଝିଅ ନଥିଲେ । ସେ ସଙ୍ଗେ ସଙ୍ଗେ ରାଜକୁମାରୀଙ୍କ ସହ ଶଗଡ଼ିଆର ବିବାହର ବ୍ୟବସ୍ଥା କରିଦେଲେ ଓ ଶଗଡିଆକୁ ରାଜା କରିଦେଇ ତୀର୍ଥରେ ଯାଇ ରହିଲେ ।

କିଛିଦିନ ସୁଖରେ କଟିଗଲା । ପଡ଼ୋଶୀ ରାଜ୍ୟର ରାଜକନ୍ୟାଙ୍କୁ ଯାଇ ଏହାପରେ ରାକ୍ଷସ

ଆମନ୍ତ୍ରଣ କଲ ଓ ଫଳରେ ସେ ଦୃଷ୍ଟି ଓ ଶ୍ରବଣ ଶକ୍ତି ହରାଇଲେ । ପଡ଼ୋଶୀ ରାଜା ମହା ପରାକ୍ରମୀ । ତାଙ୍କ ସୈନ୍ୟବାହିନୀ ଶଗଡ଼ିଆ-ରାଜାର ସୈନ୍ୟବାହିନୀ ତୁଳନାରେ ଦଶଗୁଣ । ପଡ଼ୋଶୀ ରାଜା ଶୁଣିଥିଲେ, 'ଏ ଦେଶର ନୂଆ ରାଜା ଜଣେ ଯାଦୁକର । ରାଜକୁମାରୀଙ୍କୁ ସେ ଭଲ କରି ଦେଇଥିଲେ । ତେଣୁ ପଡ଼ୋଶୀ ରାଜା ଶଗଡ଼ିଆ-ରାଜାକୁ ନିମନ୍ତ୍ରଣ କରି ପଠାଇଲେ ।

ଶଗଡ଼ିଆ ରାଜା ଖବର ଦେଲା, "ଆଜ୍ଞା, ମୋତେ ମନ୍ତ୍ର ତନ୍ତ୍ର ଗୁଣି ଗାରେଡ଼ି କିଛି ଆସେ ନାହିଁ । ଗୋଟିଏ ବର ପାଇଥିଲି । ସେଥିଯୋଗୁଁ ଏ ରାଜକୁମାରୀଙ୍କୁ ଭଲ କରିଦେଇ ପାରିଥିଲି । ଏଣିକି ସେ ବର ଆଉ ନାହିଁ । ତେଣୁ କ୍ଷମା କରନ୍ତୁ ।"

ପଡ଼ୋଶୀ ରାଜା ସହ ଯୁଦ୍ଧ ହୋଇଲେ ରାଜ୍ୟ ଯିବ, ଜୀବନ ବି ଯିବ । ତା' ଅପେକ୍ଷା ରାକ୍ଷସ ସହ ଥରେ ମୁକାବିଲା କରାଯାଉ । ଏହା ଭାବି ଶଗଡ଼ିଆ-ରାଜା ପଡ଼ୋଶୀ ରାଜ୍ୟକୁ ଗଲା ଓ ରାଜକନ୍ୟାଙ୍କ କାନ ପାଖରେ କହିଲା, "ରାକ୍ଷସ ଭାଇ, ମୁଁ ତମ ସର୍ତ୍ତ ଲଂଘନ କରୁଛି ବୋଲି ଭାବ ନାହିଁ । କଥା ହେଲା, ତମେ ଯେଉଁ କଙ୍କାଳଦେହାକୁ କୂଅ ଭିତରେ ପକାଇ ଦେଇଥିଲ, ସେ କୌଣସି ମତେ ତହିଁ ଭିତରୁ ଉଠି ଆସି ତମକୁ ଖୋଜୁଛି । ମନେହୁଏ, ଏ ରାଜ୍ୟର ସୀମାରେ ଆସି ସେ ପହଞ୍ଚି ଗଲାଣି । ତମକୁ ଏକଥା ଜଣାଇଦେବା ଉଚିତ ହେବ ବୋଲି ଭାବିଲି ।"

ସଙ୍ଗେ ସଙ୍ଗେ ରାକ୍ଷସ ରାଜକନ୍ୟାଙ୍କୁ ଛାଡ଼ିଦେଇ ପଳାଇଗଲା ।

ରାଜା ଏତେ ଖୁସି ହୋଇଗଲେ ଯେ ଶଗଡ଼ିଆ-ରାଜାକୁ ସେ ନିଜ ରାଜ୍ୟରୁ ଅଧା ଦେଇ ଦେଲେ । ସେ ଅଧକ ଶଗଡ଼ିଆ-ରାଜା'ର ପୂର୍ବ ଅର୍ଜିତ ରାଜ୍ୟ ତୁଳନାରେ ଦୁଇଗୁଣ । ତେଣୁ ସେ ଗୋଟାଏ ବେଶ୍ ବଡ଼ ରାଜ୍ୟର ରାଜା ହୋଇ ରହିଲା ।



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ନଭେମ୍ବର ୧୯୮୩ ସଂଖ୍ୟାରେ ପ୍ରକାଶ ପାଇବ



Devidas Kasbekar



Madana Gopal

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃର ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ସେପ୍ଟେମ୍ବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ।
★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

## ଜୁଲାଇ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଭୟର ଛଳନା ସିନା, ଡରୁଛି ବା କିଏ !
ଦ୍ୱିତୀୟ ଚିତ୍ର : ଭୟର ଛଳନା ନାହିଁ, ନ ଡରେ ବା କିଏ !!
ପୁରସ୍କାର ବିଜୟୀ : କାନ୍ତକେଶବ ପ୍ରଧାନ, କଟକ।
ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

## ପ୍ରଶ୍ନମାଳାର ଉତ୍ତର

୧. ଗୋବପୁରୀ। ୨. ରାଜା ଉଗ୍ରସେନଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇ ଆଗ୍ରାର ନାମ ଆଗ୍ରାବନ ହୋଇଥିଲା। ୩. ଦୋର୍ଜେ ଜାତିର ଲୋକ ବାସସ୍ଥାନରୁ ଏ ନାମ। ୪. କାଶ ଶବ୍ଦର ଅର୍ଥ ଦ୍ୟୁତି। କାଶୀ ଧର୍ମପ୍ରାଣଙ୍କ ଜୀବନକୁ ଦ୍ୟୁତିମୟ କରିଥାଏ। ବରୁଣ ଓ ଅସି ନାମକ ଦୁଇ ନଦୀ ମଝିରେ ଥିବାରୁ ବାରାଣସୀ। ୫. ଚଣ୍ଡୀଗଡ଼ରେ ଜାକୀର୍ ହୁସେନ୍‌ଙ୍କ ଗୋଲାପ ବଗିଚା। ୬. ଦାର୍ଜିଲିଂଠାରୁ ଆଠ କିଲୋମିଟର୍ ଦୂରବର୍ତ୍ତୀ ଘୁମ୍। ୭. ଆଗ୍ରା ଦୁର୍ଗ ଭିତରେ ଅବସ୍ଥିତ ମୋତି ମସ୍‌ଜିଦ୍।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.

# LIKE TO FLY INTO THE EXCITING WORLD OF ADVENTURE AND HUMOUR?





DOLTON

SUPER COMICS CAN TAKE YOU THERE EVERY FORTNIGHT!

IT COSTS ONLY [illegible] A COPY – EVIDENTLY THE MOST EASILY AVAILABLE COMICS MAGAZINE YOU'VE EVER READ:

ITS 32 FULL COLOUR PAGES TAKE YOU THROUGH MYSTERY AND EXCITEMENT TO A RENDEZVOUS WITH THE SUPER HEROES —

SUPERMAN & BATMAN®




DOLTON PUBLICATIONS
MADRAS 600 026

ପ୍ରବେଶିକା ମୂଲ୍ୟ ନାହିଁ




# ଚନ୍ଦମାମୁଁ କ୍ୟାମେଲ
## ରଙ୍ଗ ପ୍ରତିଯୋଗୀତା

**ପୁରସ୍କାର ଜଡନ୍ତୁ**
**କ୍ୟାମେଲ**

ପ୍ରଥମ ପୁରସ୍କାର ଟ. ୧୫/-
୩ ଦ୍ୱିତୀୟ ପୁରସ୍କାର ଟ ୧୦/-
୧୦ ତୃତୀୟ ପୁରସ୍କାର ଟ. ୫/-
୧୦ ସାର୍ଟିଫିକେଟ

A by K

ଏହି ପ୍ରତିଯୋଗିତାରେ ୧୨ ବର୍ଷ ପର୍ଯ୍ୟନ୍ତ ବୟସର ପିଲାମାନେ ଭାଗନେଇ ପାରିବେ । କ୍ୟାମେଲ ରଙ୍ଗ ଦ୍ୱାରା ଉପରେ ଦର୍ଶାଯାଇଥିବା ଚିତ୍ରଟିକୁ ସଂପୂର୍ଣ୍ଣରୂପେ ରଙ୍ଗ କରନ୍ତୁ ଓ ନିମ୍ନରେ ଦିଆଯାଇଥିବା ଠିକଣାକୁ ପଠେଇ ଦିଅନ୍ତୁ—ପୋ. ବକ୍ସ ନଂ. ୯୯୨୮, କୋଲାବା, ବମ୍ବେ-୪୦୦ ୦୦୫ ।

ବିଚାରକମଣ୍ଡଳୀଙ୍କ ନିଷ୍ପତ୍ତି ଚୂଡାନ୍ତ ଓ ବାଧ୍ୟତାମୂଳକ ହେବ । ଏ ସଂପର୍କରେ କୌଣସି ଚିଠିପତ୍ରକୁ ପ୍ରଶ୍ରୟ ଦିଆଯିବ ନାହିଁ । ଅନୁଗ୍ରହ କରି କୁପନକୁ କେବଳ ଇଂରାଜୀରେ ପୂରଣ କରନ୍ତୁ ।

Name: Kanaka Lata Mahanti Age: 12

Address: Nehru nagar-4 Berhampur-3 Orissa (Ganjam)

ପୂର୍ବରୁ ପଠାନ୍ତୁ : 30-9-1983

CONTEST NO.32

ଚିହ୍ନ ଦିଆଯାଇଥିବା ଜାଗାର ପାଖ ଦେଇ କାଟନ୍ତୁ ।

Vision/CPL 83121 Ori.